# କବିତା ଓ କବିତା

( ଓଡ଼ିଆ କବିତା ସଂକଳନ )

ସଂକଳକ :

ଶ୍ରୀ ଗୋପୀନାଥ ମିଶ୍ର

ଓ

ଶ୍ରୀ ବାଉରୀବନ୍ଧୁ କର



ନ୍ୟୁ ଷ୍ଟୁଡେଣ୍ଟ୍ସ ଷ୍ଟୋର

ପ୍ରକାଶକ :

ଶ୍ରୀ ଅନନ୍ତ ମିଶ୍ର

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

କଟକ-୨

ପ୍ରଥମ ସଂସ୍କରଣ :

ଦୀପାବଳି ଅମାବାସ୍ୟା, ୧୯୮୧

ମୂଲ୍ୟ : ଟ ୪-୫୦ ମାତ୍ର

Kabita O Kabita : Anthology of Oriya Poems compilled by Prof. G. Misra and Prof. B. B. Kar and Published by Shri Anant Misra, Cuttack Students' Store. Cuttack-2. Printed at M/s. Lipika Printers, Cuttack-9. 1981.

# ସୂଚୀ

# ଉପୋଦ୍‌ଘାତ

'କବିତା ଓ କବିତା' ସଂକଳନର କବିତାଗୁଡ଼ିକ ପଞ୍ଚଦଶ ଶତକଠାରୁ ଅଦ୍ୟାବଧି କାଳ ପର୍ଯ୍ୟନ୍ତ ଓଡ଼ିଆ କବିତାର ଏକ ସଂକଳନ । ଏହି ସଂକଳନରେ ସାରଳା ଦାସଙ୍କ ଠାରୁ ଆରମ୍ଭ କରି ଅତ୍ୟାଧୁନିକ ଯୁଗର କବିମାନଙ୍କ କବିତା ସ୍ଥାନପାଇଛି । ଏହି କବିତାମାନଙ୍କରୁ ବିଗତ ପାଞ୍ଚଶହ ବର୍ଷର ଓଡ଼ିଆ କବିତାର କ୍ରମ ବିବର୍ତ୍ତନର ଧାରା ଅବଶ୍ୟ ଲକ୍ଷଣୀୟ । ଏହି କ୍ରମ ବିବର୍ତ୍ତନର ଧାରା ସହିତ ଓଡ଼ିଶାର ସାମାଜିକ, ସାଂସ୍କୃତିକ ଇତିହାସ ମଧ୍ୟ ବିସ୍ତୀର୍ଣ୍ଣ ।

ଉତ୍କଳୀୟ ସଂସ୍କୃତି ନାମରେ ପ୍ରଥମରୁ କୌଣସି ସଂସ୍କୃତି ନ ଥିଲା । ଏହା ଥିଲା ମୂଳତଃ ତିନୋଟି ସଂସ୍କୃତିର ସମନ୍ୱୟ । ଏହି ସଂସ୍କୃତିତ୍ରୟୀ ହେଉଛି ଉତ୍କଳ, କଳିଙ୍ଗ ଓ କୋଶଳର ସଂସ୍କୃତି । ଉତ୍କଳର ସଂସ୍କୃତି ଉତ୍ତରରେ ଯାଜପୁରଠାରୁ ଗଡ଼ ପର୍ଯ୍ୟନ୍ତ, କଳିଙ୍ଗର ସଂସ୍କୃତି ପ୍ରାୟ ଯାଜପୁର ଠାରୁ ଦକ୍ଷିଣରେ ବିଶାଖାପାଟଣା ପର୍ଯ୍ୟନ୍ତ ଓ କୋଶଳର ସଂସ୍କୃତି ବୌଦ୍ଧରୁ ବିଳାସପୁର ଯାଏ ବିସ୍ତୃତ ଥିଲା । ଚୀନ୍ ପରିବ୍ରାଜକ ହୁଏନସାଂ କୋଶଳର ସଂସ୍କୃତିକୁ ଉଚ୍ଚସ୍ଥାନ କହିଛନ୍ତି । ଏହାର ସଂସ୍କୃତି ହେଉଛି ତନ୍ତ୍ରର ସଂସ୍କୃତି । ଏହି ତନ୍ତ୍ରର ଧାରା ଏହି ସ୍ଥାନରୁ କାମାକ୍ଷା ସିଲହଟ୍ ଦେଇ ତିବ୍ବତ ଓ ନେପାଳକୁ ଯାଇଥିଲା । ପୁଣି ଏହି କୋଶଳ ଥିଲା ଅଷ୍ଟ୍ରିକ୍ ବା ନିଷାଦମାନଙ୍କ ସଂସ୍କୃତି । ପ୍ରାକ୍‌ଖ୍ରୀଷ୍ଟ ସମୟରୁ ଏହା ଭାରତ ବର୍ଷକୁ କ୍ରମଶଃ ଆସିଥିଲା । ଏହାପରେ ଦ୍ରାବିଡ଼ ସଂସ୍କୃତି-ଯାହା କଳିଙ୍ଗର ସଂସ୍କୃତି ଓ ସର୍ବଶେଷରେ ଏ ଦେଶକୁ ଉତ୍କଳର ସଂସ୍କୃତି ଆସିଥିଲା । ପରବର୍ତ୍ତୀ ସମୟରେ ଏ ସମସ୍ତ ସଂସ୍କୃତିର ସମନ୍ୱୟରେ ଉତ୍କଳୀୟ ସଂସ୍କୃତି ଗଢ଼ି ଉଠିଛି । ଏହି ସାଂସ୍କୃତିକ ଭାବପ୍ରବାହ ସାହିତ୍ୟ କ୍ଷେତ୍ରରେ ମଧ୍ୟ ଅନୁରୂପ ଭାବରେ ପରିଲକ୍ଷିତ ।

ଓଡ଼ିଆ ସାହିତ୍ୟର ଆଦି ସ୍ଫୁରଣ ପ୍ରଥମେ ଉଡ୍‌ଡ଼ୀୟାନର ସିଦ୍ଧାଚାର୍ଯ୍ୟମାନଙ୍କ ପଦାବଳୀରେ ଝଂକୃତ ହୋଇଛି । ବୌଦ୍ଧ ସିଦ୍ଧାଚାର୍ଯ୍ୟମାନଙ୍କ ଏହି କବିତା ସମଗ୍ର ପୂର୍ବ ଭାରତୀୟ ଭାଷା ସାହିତ୍ୟର ଆଦି ରୂପ ରୂପେ ଗୃହୀତ ହୋଇଛି । ଉଡ୍‌ଡ଼ୀୟାନରୁ ରଚିତ ଦୋହାବଳି ଖ୍ରୀଷ୍ଟୀୟ ୭ମ ଶତକରୁ ଏକାଦଶ ଶତକ ପର୍ଯ୍ୟନ୍ତ ଉତ୍କଳରେ ଆଦୃତ ହୋଇଛି । କାଳକ୍ରମେ ଓଡ଼ିଆ ଭାଷାର କ୍ରମବିବର୍ତ୍ତନ ମନ୍ଦିର ଗାତ୍ରର ଖୋଦିତ ପ୍ରସ୍ତରରେ ଅଥବା ନାଥ ଯୋଗୀମାନଙ୍କର ଗୀତରେ ଫୁଟି ଉଠିଛି । ଏମାନଙ୍କର ପ୍ରଚେଷ୍ଟାରେ ଓଡ଼ିଆ ଭାଷା ଓ ସାହିତ୍ୟ ଚତୁର୍ଦ୍ଦଶ ଶତକ ପର୍ଯ୍ୟନ୍ତ ବଞ୍ଚି ରହିଛି । ଉରଜାମ ଶିଳାଲେଖ (୧୦୫୧ ଖ୍ରୀଷ୍ଟାବ୍ଦ) ଠାରୁ ଆରମ୍ଭ କରି ଶିଶୁବେଦ ଗୋରଖବାଣୀ ପର୍ଯ୍ୟନ୍ତ ବିବିଧ ରଚନାବଳୀ ଏ ସମୟରେ ସୃଷ୍ଟି ହୋଇ ଚତୁର୍ଦ୍ଦଶ ଶତାବ୍ଦୀରେ ବତ୍ସାଦାସଙ୍କ 'କଳସା ଚଉତିଶା' ପରି ଶୈବଧର୍ମ ପ୍ରତିପାଦକ କବିତା ରଚନା କରିବାକୁ ମାନସିକ ଖୋରାକ ଯୋଗାଇଛି । ନାଥ ସାହିତ୍ୟ ଠାରୁ ଆରମ୍ଭ କରି କଳସା ଚଉତିଶା ପର୍ଯ୍ୟନ୍ତ ସମସ୍ତ ରଚନାବଳୀ ବୋଧହୁଏ ଦ୍ରାବିଡ଼ ସଂସ୍କୃତିର ଏ ସାହିତ୍ୟକୁ ଅବଦାନ । ଏହି ସମୟରେ ଗଙ୍ଗବଂଶର ଶନିଦ୍ଦଶା ଆସିଥାଏ । ଓଡ଼ିଶାର ସାଂସ୍କୃତିକ, ରାଜନୀତିକ ସ୍ଥିତି ବୈଦେଶିକ ଶତ୍ରୁମାନଙ୍କ ଆକ୍ରମଣରେ ବିପର୍ଯ୍ୟସ୍ତ ହୋଇ ପଡ଼ିଥାଏ । ହଠାତ୍ ଗଙ୍ଗବଂଶର ଶେଷ ନରପତି ମତ୍ତ ଭାନୁଦେବଙ୍କଠାରୁ କପିଳେନ୍ଦ୍ର ରାଜ୍ୟ ଭାର ଗ୍ରହଣ କରନ୍ତି । ସୂର୍ଯ୍ୟବଂଶର ଅଭ୍ୟୁଦୟ ହୁଏ ଓ ଏ ଜାତିର ସାଂସ୍କୃତିକ, ରାଜନୀତିକ ବିକାଶ ସଙ୍ଘଟିତ ହୁଏ । ଏହି ପଞ୍ଚଦଶ ଶତକରେ ସୂର୍ଯ୍ୟବଂଶୀ ସମ୍ରାଟ କପିଳେନ୍ଦ୍ର ଦେବଙ୍କ ସମସାମୟିକ ରୂପେ ଓଡ଼ିଆ ସାହିତ୍ୟରେ ଆବିର୍ଭାବ ହୁଅନ୍ତି ସାରଳା ଦାସ । ଏଇଠାରୁ ଓଡ଼ିଆ କବିତାର ଧାରା ସ୍ପଷ୍ଟ ପ୍ରବାହିତ ହୋଇ କ୍ରମୋନ୍ନତି ପଥରେ ବିଭିନ୍ନ ସୋପାନ ଦେଇ ଅଗ୍ରଗତି କରେ ।

ସାରଳା ଦାସ ଓଡ଼ିଆ କବିତାରେ ଉତ୍କଳ, କଳିଙ୍ଗ ସଂସ୍କୃତିର ସମନ୍ୱୟ କରି ନବ ଜାଗରଣ ଆଣିଛନ୍ତି । ସାରଳା ଦାସ ଏ ଜାତିର ବିରାଟ ସାଂସ୍କୃତିକ ଇତିହାସ କବିତା ଆକାରରେ ମହାଭାରତରେ ଲେଖି

ଯାଇଛନ୍ତି । କପିଳେନ୍ଦ୍ରଦେବ ଯେପରି ଦେଶର ସୁରକ୍ଷା ପାଇଁ ଶତ୍ରୁକୁ ନିପାତ କରି ଏ ଜାତିପାଇଁ ବିଜୟ ଉଲ୍ଲାସ ଆଣିଥିଲେ, ସାରଳା ଦାସ ସେହିପରି ଚିହ୍ନିଥିଲେ ଏ ଜାତିର ଜୀବନ ଚର୍ଯ୍ୟାକୁ, ସମ୍ମାନ ଦେଇଥିଲେ ଏ ଦେଶର ନରପତିଙ୍କୁ ଓ ଉପଲବ୍ଧି କରିଥିଲେ ବଣ୍ଣ ଗୌରବର ପ୍ରତୀକ ଜାତିର ଗତି ଜଗନ୍ନାଥଙ୍କୁ । ସାରଳାଦାସ କପିଳେନ୍ଦ୍ରଦେବଙ୍କ ଦିଗବିଜୟ, ଉତ୍କଳର ନଦ-ନଦୀ, ସେନା-ଶକ୍ତି, ଦେବ-ଦେବୀ, ପୁରାଣ ଲୋକ ଚଳଣି ଇତ୍ୟାଦିକୁ ତାଙ୍କର ମହାଭାରତରେ ଦାଣ୍ଡୀ ବୃତ୍ତରେ ଲିପିବଦ୍ଧ କରିଯାଇଛନ୍ତି । ମୂଳ ସଂସ୍କୃତ ମହାଭାରତକୁ ଅନୁକରଣ ନ କରି ଉତ୍କଳୀୟ ପରିବେଶରେ ସେ ଯେଉଁ ମହାଭାରତ ସୃଷ୍ଟି କରିଯାଇଛନ୍ତି, ତାହା ସମଗ୍ର ଭାରତୀୟ ସାହିତ୍ୟରେ ଅନନ୍ୟ ଓ ଅନୁପଲବ୍ଧ । ସାରଳା ଦାସଙ୍କ ଠାରୁ ଓଡ଼ିଆ ସାହିତ୍ୟରେ ପୁରାଣଯୁଗର ଆରମ୍ଭ ହୋଇଛି ଓ ବହୁ ସଫଳ ପୁରାଣ ସୃଷ୍ଟି ହୋଇଛି । ବିଭିନ୍ନ ସାଂସ୍କୃତିକ ବୈଷମ୍ୟର ଐକ୍ୟ ସାରଳା ସାହିତ୍ୟରେ ସମାହିତ ହୋଇ ଓଡ଼ିଆ ସାହିତ୍ୟର ଏକ ନୂତନ ରୂପ ଉନ୍ମୋଚିତ ହୋଇଛି ।

ସାରଳା ଦାସଙ୍କ ପରେ ଷୋଡ଼ଶ ଶତକରେ ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତ, ଅନନ୍ତ ଯଶୋବନ୍ତ ଏ ସାହିତ୍ୟର ନେତୃତ୍ୱ ନେଇଛନ୍ତି । ଏହି ସମୟରେ ଶ୍ରୀଚୈତନ୍ୟ ୧୫୦୯ ଖ୍ରୀଷ୍ଟାବ୍ଦରେ ଓଡ଼ିଶାକୁ ଆଗମନ କରିଛନ୍ତି । ପ୍ରତାପରୁଦ୍ର ଶ୍ରୀଚୈତନ୍ୟଙ୍କୁ ଆଦରର ସହିତ ବରଣ କରି ଶ୍ରୀକ୍ଷେତ୍ରକୁ ପାଛୋଟି ଆଣିଛନ୍ତି । ଶ୍ରୀଚୈତନ୍ୟଙ୍କ ପ୍ରଚାରିତ ଧର୍ମ ପ୍ରତାପରୁଦ୍ର ଦେବଙ୍କ ଦ୍ୱାରା ରାଜ ପୃଷ୍ଠପୋଷକତା ଲାଭ କରିଛି । ଜଗନ୍ନାଥଙ୍କୁ କେନ୍ଦ୍ର କରି ଓଡ଼ିଶା ବୈଷ୍ଣବ ଧର୍ମ ନାମରେ ଏକ ନୂତନ ଧାର୍ମିକ ଚେତନା ସୃଷ୍ଟି ହୋଇଛି । ଯୋଗ, ଲୟ, ଶରୀର ତତ୍ତ୍ୱ, ସମ୍ପର୍କରେ ନାନା କାବ୍ୟ, କବିତା ଓ ପୁରାଣ ରଚନା କରାଯାଇଛି । ପିଣ୍ଡ ବ୍ରହ୍ମାଣ୍ଡତତ୍ତ୍ୱ, ଜନ୍ତ୍ର କାୟାସାଧନା, ହଠଯୋଗର ବ୍ୟାପକ ଚର୍ଚ୍ଚା କାବ୍ୟ କବିତାରେ ଏ ସମୟରେ କରାଯାଇଛି । ଏସବୁ ସହିତ ଓଡ଼ିଆ କାବ୍ୟ କବିତାକୁ ସାର୍ବଜନୀନ, ସାର୍ବମନନ କରିବା ପାଇଁ ବଳରାମ ଦାସ ଦାଣ୍ଡୀ ବୃତ୍ତରେ ଦାଣ୍ଡି ରାମାୟଣ, ଜଗନ୍ନାଥ ଦାସ ନବାକ୍ଷରୀ ବୃତ୍ତ ଗୁଚ୍ଛରେ ଆଗରେ 'ଭାଗବତ,' ଅଚ୍ୟୁତାନନ୍ଦ 'ହରିବଂଶ'

'ଯଶୋବନ୍ତ 'ପ୍ରେମଭକ୍ତି ବ୍ରହ୍ମଗୀତା' ଓ ଶିଶୁ ଅନନ୍ତ 'ହେତୁଉଦୟ ଭାଗବତ' ରଚନା କରି କାଳ ବକ୍ଷରେ ଯଶସ୍ୱୀ ହୋଇଛନ୍ତି । ଏହି ଷୋଡ଼ଶ ଶତକରେ କୋଇଲି, ଚଉତିଶା, ଟୀକା, ସଂହିତା ପ୍ରଭୃତି ଆଙ୍ଗିକ ବୈଚିତ୍ର୍ୟ ନେଇ କବିତାମାନ ମଧ୍ୟ ସୃଷ୍ଟି ହୋଇଛି । ଏ ସମୟରେ ଅର୍ଜ୍ଜୁନ ଦାସ, ମାର୍କଣ୍ଡେୟ ଦାସ, ନରସିଂହ ସେଣ, ଦେବଦୁର୍ଲ୍ଲଭ ଦାସ ପ୍ରମୁଖ କବିମାନେ ସ୍ୱକୀୟ ରଚନା ସମ୍ଭାରରେ ଓଡ଼ିଆ କାବ୍ୟ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ବଳରାମ, ଜଗନ୍ନାଥ ପ୍ରମୁଖ ପଞ୍ଚସଖାଙ୍କ ପରେ ଓଡ଼ିଶାର ସାହିତ୍ୟରେ ରୀତି ଯୁଗର ଅଭ୍ୟୁଦୟ ହୋଇଛି ।

ପ୍ରତାପରୁଦ୍ର ବୈଷ୍ଣବ ଧର୍ମରେ ଦୀକ୍ଷିତ ହେବା ପରେ ଉତ୍କଳର ରାଜଶକ୍ତି ମଧ୍ୟ ଗୈରିକ ବସନାବୃତ୍ତ ହୋଇଛି । ତାହା କ୍ରମଶଃ ଦୁର୍ବଳ ହୋଇ ୧୫୬୮ ଖ୍ରୀଷ୍ଟାବ୍ଦରେ ମୁକୁନ୍ଦଦେବଙ୍କ ଶାସନ କାଳରେ ନିଜର ସ୍ୱାଧୀନତା ହରାଇ ବସିଛି । ମୁକୁନ୍ଦଦେବଙ୍କ ପରାଜୟ ପରେ ଉତ୍କଳ ମୋଗଲ ଶାସନାଧୀନ ହୋଇଛି । ଏମାନଙ୍କ ସମୟରେ ବିଶାଳ ଉତ୍କଳ ସାମ୍ରାଜ୍ୟକୁ ଖଣ୍ଡ ବିଖଣ୍ଡ କରାଯାଇ କ୍ଷୁଦ୍ର କ୍ଷୁଦ୍ର କରଦ ରାଜ୍ୟରେ ବିଭାଜନ କରାହୋଇଛି । ପ୍ରତ୍ୟେକ କରଦ ରାଜ୍ୟରେ ରାଜାମାନଙ୍କ ହସ୍ତରେ ଶାସନ ଅର୍ପିତ କରାଯାଇଛି । ଏହି ରାଜାମାନେ ମୋଗଲ ବାଦଶାହାମାନଙ୍କ ପରି ବିଳାସୀ ହୋଇପଡ଼ିଛନ୍ତି ଓ କବି, ପଣ୍ଡିତ, ସଙ୍ଗୀତଜ୍ଞମାନଙ୍କ ପୀଠସ୍ଥଳୀ ରୂପେ ରାଜ ଦରବାର ଭୂମିକା ଗ୍ରହଣ କରିଛି । ରାଜଦରବାରରେ ରାଜପ୍ରଶସ୍ତି ପାଇଁ କବି, ପଣ୍ଡିତମାନେ ଶାସ୍ତ୍ର, ବିଦ୍ୟା କାବ୍ୟ, କବିତା ଚର୍ଚ୍ଚା କରିଛନ୍ତି । ଏହି ସମୟରେ ସଂସ୍କୃତ ପ୍ରୀତି ମୂର୍ଦ୍ଧୀ କାବ୍ୟକବିତା ଓଡ଼ିଆ ଭାଷାରେ ସୃଷ୍ଟି ହୋଇଛି ଉପେନ୍ଦ୍ର ଭଞ୍ଜ ଏ ଯୁଗର ଅଧିନାୟକ ହେଲେ ସୁଦ୍ଧା ଏହାର ପ୍ରକୃତ ସ୍ୱରୂପ ଶିଶୁଶଙ୍କରଙ୍କ 'ଉଷାଭିଳାଷ,' ବିଷ୍ଣୁଦାସଙ୍କ 'ପ୍ରେମ ଲୋଚନା ଠାରୁ ଆରମ୍ଭ ହୋଇଛି । ଏହି ରୀତିଯୁଗରେ ମୁଖ୍ୟତଃ ଚାରି ପ୍ରକାରର କାବ୍ୟ କବିତା ସୃଷ୍ଟି ହୋଇଛି । (କ) ରାମ ଓ କୃଷ୍ଣଭକ୍ତି କେନ୍ଦ୍ରିକ କାବ୍ୟ, (ଖ) କାଳ୍ପନିକ କାବ୍ୟ, (ଗ) ଆଦର୍ଶ ପ୍ରମୂର୍ତ୍ତ ପାଣ୍ଡିତ୍ୟପୂର୍ଣ୍ଣ କାବ୍ୟ, (ଘ) ଗୀତ କବିତା ଓ ପଦାବଳୀ । ଏହି ଯୁଗରେ କାବ୍ୟ କବିତା ଶୃଙ୍ଗାର ରସକୁ ଭିତ୍ତି କରି ପ୍ରକଟିତ ହୋଇଛି । ଅଳଙ୍କାରର ପ୍ରାଚୁର୍ଯ୍ୟ, ରସର ମଞ୍ଜୁଳ ସମାବେଶ,

ଆଙ୍ଗିକ ବୈଚିତ୍ର୍ୟରେ ରୀତିଯୁଗର କାବ୍ୟ ରୂପାନ୍ୱିତ ହୋଇଛି । ଘନକୃଷ୍ଣ ଦାସ, ଉପେନ୍ଦ୍ର ଭଞ୍ଜ, ଭକ୍ତ ଚରଣ, ଅଭିମନ୍ୟୁ, ସାମନ୍ତସିଂହାର, ବ୍ରଜନାଥ ଗୋପାଳକୃଷ୍ଣ, ବନମାଳୀ, କବିସୂର୍ଯ୍ୟ ପ୍ରମୁଖ ଏ ସମୟର ବିଶିଷ୍ଟ କବିରୂପେ ଆଦୃତ ହୋଇଛନ୍ତି । ପୀତାମ୍ବର ଦାସ, ବିଶ୍ୱନାଥ ଖୁଣ୍ଟିଆଙ୍କ ପରି ପୁରାଣ ଲେଖକ ଏଯୁଗର ବ୍ୟତିକ୍ରମ । ଓଡ଼ିଆ ସାହିତ୍ୟରେ ରୀତିଯୁଗର ପ୍ରଭାବ ପ୍ରାୟ ଊନବିଂଶ ଶତକର ଅର୍ଦ୍ଧକାଳ ପର୍ଯ୍ୟନ୍ତ ଅପ୍ରତିହତ ଥିଲା ।

ରୀତିକାଳର ଅଖଣ୍ଡ ସାର୍ବଭୌମତ୍ୱକୁ ପ୍ରାୟ ଊନବିଂଶ ଶତକ ପର୍ଯ୍ୟନ୍ତ କୌଣସି କବି ବାଧ୍ ପାଇନଥିଲେ । ଉତ୍କଳର କାବ୍ୟଜଗତରେ ଆକସ୍ମିକ ଭାବରେ ଦେଖାଦେଲେ ଅଲୌକିକ ପ୍ରତିଭାଶାଳୀ କବି ଭୀମ ଭୋଇ । ମହିମା ଧର୍ମକୁ ନେଇ ସେ ସୃଷ୍ଟି କଲେ ତାଙ୍କର 'ସ୍ତୁତି ଚିନ୍ତାମଣି,' ବ୍ରହ୍ମ ନିରୂପଣ-ଗୀତା', 'ଶ୍ରୁତି ନିଷେଧ ଗୀତା ପ୍ରଭୃତି କାବ୍ୟ-କବିତା ଗ୍ରନ୍ଥ । ସେ ବିଭିନ୍ନ ଧର୍ମଧାରଣାରୁ ଦୂରେଇଯାଇ ମାନବବାଦୀ ଅହିଂସା ଧର୍ମ ପ୍ରଚାର କଲେ । ତାଙ୍କର ସ୍ୱର ହେଲା, 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ ।' ଏଇ କବିଙ୍କଠାରେ ପ୍ରାଚୀନ ଓଡ଼ିଆ କବିତାର ଧାରା ଶେଷ ହୋଇଛି ଓ କବିତା ଭିନ୍ନରୂପ ନେଇଛି ।

ଫିରିଙ୍ଗି ଶାସନର ଅଭ୍ୟୁଦୟ, ଶିକ୍ଷାର ପ୍ରସାର, ପତ୍ରପତ୍ରିକାର ପ୍ରକାଶନ, ମିଶନାରୀମାନଙ୍କ ଧର୍ମ ପ୍ରଚାର ଫଳରେ ଏ ଦେଶରେ ଏକ ନୂତନ ସାଂସ୍କୃତିକ ବାତାବରଣ ସୃଷ୍ଟି ହୋଇଛି । ଏ ଦେଶର ଲୋକେ କ୍ରମେ ଇଂରାଜୀ ଶିକ୍ଷା ସଭ୍ୟତାରେ ମନ ଦେଇଛନ୍ତି । କାବ୍ୟ କବିତାରେ ନୂତନ ରୁଚି ମଧ୍ୟ ପରିଲକ୍ଷିତ ହୋଇଛି । ଓଡ଼ିଆ କବିତାରେ ଏହି ନୂତନ ରୁଚି ଓ ନୂତନ ଭାବଧାରା ଜଗନ୍ମୋହନ ଲାଲ ପ୍ରଥମେ 'ଉମା ଭଞ୍ଜନ' କାବ୍ୟରେ ଆଣିଛନ୍ତି । ରାଧାନାଥ, ମଧୁସୂଦନ, ଫକୀର ମୋହନ କ୍ରମେ ଏହି ଧାରାକୁ ସଞ୍ଜୀବିତ କରିଛନ୍ତି । ରାଧାନାଥଙ୍କ କେଦାରଗୌରୀ, ଉଷା, ଚନ୍ଦ୍ରଭାଗା, ପାର୍ବତୀ, ନନ୍ଦିକେଶ୍ୱରୀ, ଚିଲିକା, ମହାଯାତ୍ରା ପ୍ରଭୃତିରେ ସ୍ୱାଧୀନ ଚେତନା ଓ ନୂତନ ରୁଚିବୋଧ ସ୍ପଷ୍ଟ ବାରି ହୋଇପଡ଼େ । ମଧୁସୂଦନଙ୍କ କବିତାରେ ବ୍ରାହ୍ମଭାବନା ଓ ପାଶ୍ଚାତ୍ୟ ଆଙ୍ଗିକ ମଧ୍ୟ ଦେଖିବାକୁ ମିଳେ । ଗଙ୍ଗାଧର,

ନନ୍ଦକିଶୋର ଏ କାଳରେ କେତେକାଂଶରେ ଜାତୀୟଜୀବନ ଓ ପରମ୍ପରାର ଝଙ୍କାରର ସାଧକ ହୋଇଛନ୍ତି । ତଥାପି ଏମାନଙ୍କ କବିତାରେ ପ୍ରାଚ୍ୟ-ପାଶ୍ଚାତ୍ୟ ଭାବାଦର୍ଶର ଏକ ମଧୁର ସମନ୍ୱୟ ଦେଖିବାକୁ ମିଳେ । ରାଧାନାଥଙ୍କ ସମୟ ହେଉଛି ଆଧୁନିକ ଯୁଗର ଅଭ୍ୟାରମ୍ଭ ଓ ତାହା ବିଭିନ୍ନ ଭାବରେ ବିକଶିତ ହେବାର ଅବସର ହୋଇଛି । ଜାତୀୟ ଜାଗରଣର ପର୍ଯ୍ୟାୟ ରାଧାନାଥଙ୍କ ପରେ ଓଡ଼ିଆ କବିତାରେ ଆରମ୍ଭ ହୋଇଛି ।

ଉତ୍କଳ ସମ୍ମିଳନୀର ଆରମ୍ଭ ( ୧୯୦୩ ଡିସେମ୍ବର ୩୦ ତାରିଖ) । ସତ୍ୟବାଦୀ ବନବିଦ୍ୟାଳୟର ପ୍ରତିଷ୍ଠା (୧୯୦୯) ଫଳରେ ଏ ଜାତି ବକ୍ଷରେ ଜାତୀୟତାର ଭାବ ପ୍ରକାଶ ପାଇଛି । ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶଙ୍କ ପରି କବିବୃନ୍ଦ ଏ ଜାତିର ଜୀବନ ବେଦୀରେ ଦଣ୍ଡାୟମାନ ହୋଇ ଜାତୀୟତାର ଆବାହନୀ ଶୁଣାଇଛନ୍ତି । "ମିଶୁ ମୋର ଦେହ ଏ ଦେଶ ମାଟିରେ, ଦେଶବାସୀ ଚାଲି ଯାଆନ୍ତୁ ପିଠିରେ" ପରି ଆତ୍ମତ୍ୟାଗର କବିତା ଏ କାଳରେ ରଚିତ ହୋଇଛି । ଓଡ଼ିଆ କବିତାରେ ଏଇ ଧାରା ୧୯୨୦ ମସିହା ପର୍ଯ୍ୟନ୍ତ ଅବ୍ୟାହତ ରହିଛି । ଏହାପରେ ଓଡ଼ିଆ କବିତାରେ ସବୁଜ ଚେତନା ଦେଖାଦେଇଛି ।

ପ୍ରଥମ ବିଶ୍ୱଯୁଦ୍ଧର ବୈପ୍ଳବିକ ଆବର୍ତ୍ତନ, ଜାତୀୟ ଜାଗରଣ, କବିତାରେ ପଳାୟନବାଦ ଓ ପ୍ରଗତିବାଦର ଧାରା ସୃଷ୍ଟି ପାଇଁ ଅନୁପ୍ରେରିତ କରିଛି । ଓଡ଼ିଆ କବିତାରେ ଏହି ଧାରା ୧୯୨୧ ମସିହାରୁ ଆରମ୍ଭ ହୋଇଛି ଓ ୧୯୩୫ ମସିହା ପର୍ଯ୍ୟନ୍ତ ଏହାର ପ୍ରଭାବ ଓଡ଼ିଆ କବିତାରେ ଅନୁଭୂତ ହୋଇଛି । ଭାରତୀୟ ସାହିତ୍ୟରେ ହିନ୍ଦୀର ଛାୟାବାଦୀ ଯୁଗ, ବଙ୍ଗଳାର କଲ୍ଲୋଳଯୁଗ ଏହାର ସମସାମୟିକ । ଓଡ଼ିଆ କବିତାରେ ଏଇ ସବୁଜ ଧାରାକୁ କାଳନ୍ଦୀ ଚରଣ, ଅନ୍ନଦାଶଙ୍କର, ବୈକୁଣ୍ଠନାଥ, ହରିହର, ଶରତଚନ୍ଦ୍ର ଉଜ୍ଜୀବିତ କରି ରଖିଥିଲେ । ଏହି କବିମାନେ ଯୌବନର ଫଗୁଲ ସ୍ୱପ୍ନରେ ଓ ଉଦ୍ଦାମ ଚେତନାରେ ମସଗୁଲ୍ ହୋଇଥିଲେ ସୁଦ୍ଧା ମାନବବାଦୀ ଚିନ୍ତାଧାରା, ଉପେକ୍ଷିତ ପାଇଁ ପ୍ରେରଣା, ନାରୀଜାତି ପ୍ରତି ଶ୍ରଦ୍ଧା, ନିର୍ଭୀକ ବାଣୀ ଓଡ଼ିଆ କବିତାରେ ପ୍ରକାଶ କରିଥିଲେ । ସବୁଜ ଭାବଧାରାରେ ଅନୁପ୍ରାଣିତ ହୋଇ ସେ କାଳର ଅନେକ ତରୁଣ କାବ୍ୟ ସାଧନାରେ ଅଗ୍ରସର ହୋଇଥିଲେ ।

ଏମାନଙ୍କ ମଧ୍ୟରେ ମାୟାଧର ମାନସିଂହଙ୍କ ନାମ ସ୍ମରଣୀୟ । ମାନସିଂହ ସବୁଜ ଭାବଧାରାକୁ ଆଦର୍ଶ କରିଥିଲେ ସୁଦ୍ଧା ତାଙ୍କର କବିତା ହୃଦୟ ପ୍ରତିଭାର ସାମ୍ପ୍ରତିର ତେଜୋମୟୀ ଥିଲା । ଏଇ ସବୁଜ ପନ୍ଥୀଙ୍କ ପରେ ଓଡ଼ିଆ କବିତାରେ ପ୍ରଗତିବାଦୀ କାବ୍ୟଧାରା ସୃଷ୍ଟି ହୋଇଛି ।

ଓଡ଼ିଆ ସାହିତ୍ୟରେ ୧୯୩୫ ମସିହାରେ ନବଯୁଗ ସାହିତ୍ୟ ସଂସଦର ପ୍ରତିଷ୍ଠା ହୁଏ । ଧର୍ମ, ସମାଜରେ ସଂସ୍କାର ଆନ୍ଦୋଳନ, ବିଜ୍ଞାନର ଅଗ୍ରଗତି ମଧ୍ୟରେ ନୂତନ ସଭ୍ୟତାର ସ୍ୱପ୍ନ ଏ ଯୁଗର କବି ଦେଖିଛି । ହରି ରାଜଗୁରୁ, ଅନନ୍ତ ପଟ୍ଟନାୟକ, ମନମୋହନ ମିଶ୍ର ପ୍ରମୁଖ ଓଡ଼ିଆ କବିତାରେ ଏଇ ପ୍ରଗତିବାଦୀ ଭାବଧାରା ପ୍ରକାଶରେ ସଫଳ ହୋଇଛନ୍ତି । ଏହି ସମୟର କବିତାରେ ବାମପନ୍ଥୀ ଚିନ୍ତାଧାରା ଲକ୍ଷଣୀୟ । ଓଡ଼ିଆ କବିତାରେ ପ୍ରଗତିବାଦୀ ଚିନ୍ତାଧାରା ସ୍ୱାଧୀନତା ପ୍ରାପ୍ତି (୧୯୪୭) ପର୍ଯ୍ୟନ୍ତ ସଫଳ ରୂପ ନେଇଛି । ସ୍ୱାଧୀନୋତ୍ତର କାଳରେ କବିତାର ମୋଡ଼ ବଦଳିଛି ।

ସ୍ୱାଧୀନତା ପରବର୍ତ୍ତୀ କାଳର ଓଡ଼ିଆ କବିତା 'ନୂତନ କବିତା' । ଏ କବିତାରେ ପାଶ୍ଚାତ୍ୟ ମନ୍ତ୍ର କାବ୍ୟ ରୀତିର ମଧୁର ସମନ୍ୱୟ ହୋଇଛି । ଚେତନାର ଭଗ୍ନାଂଶ ଓ ଚେତନାର ସମନ୍ୱୟ ଏ କବିତାରେ ଦେଖା ଦେଇଛି । କବିତାର ବୃତ୍ତ, ଭାଷା, ଛନ୍ଦର ନୂତନ ପରୀକ୍ଷା ମଧ୍ୟ ଏ ସମୟର ଅଧିକାଂଶ କବିତାରେ ଯଥେଷ୍ଟ ପରିମାଣରେ ଦେଖିବାକୁ ମିଳେ । ଅନ୍ତତଃ ଏ ଯୁଗର କେତେକ ପ୍ରତିନିଧି ସ୍ଥାନୀୟ କବି ଯଥା— ଗୁରୁପ୍ରସାଦ, ବେଣୁଧର, ଜାନକୀବଲ୍ଲଭ, ବିନୋଦ, ଚିନ୍ତାମଣି, ଗୋପାଳ ଚନ୍ଦ୍ର ମିଶ୍ର ପ୍ରଭୃତି କବିଙ୍କର କବିତା ସଂକଳନରେ ସନ୍ନିବେଶିତ । ଓଡ଼ିଆ କବିତାରେ ନୂତନ କବିତାର ଏଇଧାରା ୧୯୬୦ ମସିହା ପର୍ଯ୍ୟନ୍ତ ବିଶେଷ ଭାବରେ ପ୍ରକାଶିତ ।

ଭାରତର ସ୍ୱାଧୀନତା ପରେ ତା'ର ଆନ୍ତର୍ଜାତିକ ସଂପର୍କ ଦୃଢ଼ ହୋଇଛି । ଗଣ ମାଧ୍ୟମର ପ୍ରଚାରଦ୍ୱାରା ବିଶ୍ୱସଂସ୍କୃତିର ବାର୍ତ୍ତା ପ୍ରତ୍ୟେକ କବି ଗ୍ରହଣ କରିବାକୁ ଉଦ୍ୟମ କରିଛନ୍ତି । କବିତାରେ ମୃତ୍ୟୁଚେତନା, ଆତ୍ମନିର୍ବାସନ, ଏକାକୀତ୍ୱବୋଧର ସ୍ୱର ତୀବ୍ର ହୋଇଛି । କବିତାରେ ବୌଦ୍ଧିକତା ଦେଖା ଦେଇଛି । ବୌଦ୍ଧିକତା କ୍ରମଶଃ ବୌଦ୍ଧିକ ଏବଂ ଛନ୍ଦବାଦ ଆଡ଼କୁ ଗତି କରିଛି ।

କବିତା ନାମରେ ଅକବିତା ସୃଷ୍ଟି କରିବାକୁ ଅନେକ କବି ବୌଦ୍ଧିକ ଏକଛତ୍ର-ବାଦରଛତ୍ରଧାରଣ କରି ସଂକୋଚବୋଧ କରନାହାନ୍ତି । ଏସବୁ ମଧ୍ୟରେ ଯେଉଁ କେତେଜଣ କବି ନିଜର ପ୍ରତିଭାର ପରିଚୟ ଦେଇଛନ୍ତି, ସେମାନଙ୍କ ମଧ୍ୟରେ ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, କମଳାକାନ୍ତ, ସୌଭାଗ୍ୟ, ରାଜେନ୍ଦ୍ର କିଶୋର, ହରିହର, ପ୍ରସନ୍ନ ମିଶ୍ର, ଫଣୀ ମହାନ୍ତି, ସରୋଜ ରଞ୍ଜନ, ଦୀପକ ମିଶ୍ର ପ୍ରମୁଖଙ୍କ ସାଧନା ସିଦ୍ଧି ମୁଖର । ଏ ସମସ୍ତର ନାରୀକବି ଭାବରେ ଅବନ୍ତୀ ପ୍ରତିଭା, ଶକୁନ୍ତଳା, ବ୍ରହ୍ମୋତ୍ରୀଙ୍କ ସାଧନା କିଛି କମ୍ ନୁହେଁ । ଏମାନଙ୍କ ପରେ ଅନେକ ପ୍ରତିଶ୍ରୁତିବାନ ତରୁଣ ତରୁଣୀ ମଧ୍ୟ ଓଡ଼ିଆ କବିତାରେ ନିଜର ମୌଳିକ ଚିନ୍ତାର ପରିଚୟ ଦେଲେଣି । ସେମାନଙ୍କ ପ୍ରତିଭା ଆଗାମୀ ଦଶକରେ କାଳବକ୍ଷରେ ସଶ ଚହ୍ନିତ କରି ଓଡ଼ିଆ କବିତାକୁ ଦିଗ୍‌ଦର୍ଶନ ଦେବ । ସଂକଳନର କଳେବର ବୃଦ୍ଧି ଆଶଙ୍କାରେ ଏଭଳି କେତେକ କବିଙ୍କ କବିତା ବାଦ୍ ପଡ଼ିଥିଲେ ହେଁ ଏହା ଆମର ଇଚ୍ଛାକୃତ ନୁହେଁ ।

କବି ହେଉଛି ସମାଜର ସତ୍ୟ ଦ୍ରଷ୍ଟା । ସେ ନିରବ ଭୂମିର ଅସ୍ୱୀକୃତ ସାଧକ । କବି ଯୁଗେ ଯୁଗେ ଭାବରାଜ୍ୟର ଆବେଗ, ସଂବେଗକୁ ନେଇ ଆତ୍ମବୋଧ ସହ ବ୍ୟକ୍ତିବୋଧ, ସମାଜବୋଧର ଚିତ୍ର ଦେଇ ସ୍ୱକବିତାକୁ ପ୍ରକାଶ କରିଛି । କବି କାଳକୁ ଅପେକ୍ଷା ନ କରି ତାର ସୃଷ୍ଟି କର୍ମରେ ଆଗେଇ ଚାଲିଛି । କେତେବେଳେ ସେ କାଳର ଅନ୍ତରୀଣ, କେତେବେଳେ ବନ୍ଦୀଥିଏ କେତେବେଳେ କାଳଜୟୀ ଓ କେତେବେଳେ ସ୍ଥାନ କାଳପାତ୍ର ସୀମା ପରିସରର ଅତୀତ । ପାଠକମାନେ ଓଡ଼ିଆ କବିତାର ଐତିହାସିକ କ୍ରମ ବିବର୍ତ୍ତନର ଧାରା ଓ କବିତାର ଆର୍ଥିକ ଓ ଆତ୍ମିକ ଉଦ୍‌ବର୍ତ୍ତନ—ଏହି ସଂକଳନରୁ ଗ୍ରହଣ କରିପାରିଲେ ଆମ୍ଭର ଶ୍ରମ ସାର୍ଥକ ହେବ । ଇତି ।

ଗୋପୀନାଥ ମିଶ୍ର
ବାଉରୀବନ୍ଧୁ କର
ପ୍ରାଧ୍ୟାପକ ଓ ଅଧ୍ୟାପକ
ଓଡ଼ିଆ ବିଭାଗ
ରେଭେନ୍‌ସା କଲେଜ ।

ଦୀପାବଳି
ତା ୨୭ । ୧୦ । ୮୧

# ଅର୍ଜ୍ଜୁନର ପ୍ରତିଜ୍ଞା

—ସାରଳା ଦାସ

ଅଗସ୍ତି କହିଲେ ସେ ପୁରାଣ ସଂଯୋଗେ
ଅର୍ଜ୍ଜୁନ ପ୍ରତଗ୍ୟାଂ କହନ୍ତ ସେ ବଇବସ୍ୱତ ମନୁ ଆଗେ । ୧ ।

ଦ୍ରୋଣଙ୍କର ଭାରଯା ପାକ ସମ୍ପାଦନ କରି
ସ୍ନାହାନ ନମନ୍ତେ ସେ ଯାଆନ୍ତି ବ୍ରହ୍ମସ୍ୱରି । ୨ ।

ସୁରଭି ନଦୀକୁ ସ୍ନାହାନ କରଣେ ଯାଉଣ ଦୀର୍ଘ ପଥେ
ବାଟରେ ତେନ୍ତୁଳି ବୃକ୍ଷେକ ଦେଖିଲେ ଭରଦ୍ୱାଦଣଙ୍କର ପୁତେ । ୩ ।

ବୋଇଲେ ଆମ୍ବିଳ ପଲ୍ଲବ ହୋଇଛି ବୃକ୍ଷବର
ବେଗେଣ ଦ୍ରୋଣେ ପେଷିଲେ କଣ୍ଠୁରି ନାଗର । ୪ ।

ବୃକ୍ଷରୁ ପତ୍ରଯାକ ଝାଡ଼ି ପକାଇଲେ
ଜାହ୍ନବୀକି ବୋଲି ଗୁରୁ ସ୍ନାହାନ କରିଗଲେ । ୫ ।

ସେମନ୍ତ ସମୟେ ସେ ଅର୍ଜ୍ଜୁନ ଅଇଲା
ଗୁରୁଙ୍କ ଘରଠାରେ ପ୍ରବେଶ ହୋଇଲା । ୬ ।

ଅର୍ଜ୍ଜୁନେ ପଚାରିଲେ ଗୁରୁଗଲେ କେଣେ,
ଅନ୍ନ ଉଆର କର ବାବୁ ଗୁରୁ ଗଲେ ସ୍ନାହାନେ । ୭ ।

ସେତେ ଶୁଣି ବୀର ସେହିପଥେ ଗବନ
ବାଟରେ ଦେଖିଲେ ତେନ୍ତୁଳି ବୃକ୍ଷର ବେବସ୍ଥାମାନ । ୮ ।

ଚଇତମାସ ନୋହିଲ ସେତ ପତ୍ରଝଡ଼ା ଦଶା
ସେତେ ବୋଲି ସେ ବୃକ୍ଷବର କଢରେ ହୋଇଲା । ୯ ।

ଦେଖଇ ପଙ୍ଖ ଯେ ନାସିକେ ଛେଦନ
ହୃଦରେ ବିସ୍ମିତ ବୋଲଇ ଦ୍ରୋଣଙ୍କ କଥାମାନ । ୧୦ ।

ସେ ମହାଖଣ୍ଡରେ ବୃକ୍ଷ ହେଉଛି ଦଗଧ
ଦେଖିଣ ହୃଦଗତେ ମନରେ ବଡ଼ କ୍ରୋଧୀ । ୧୧ ।

ପବନା ଶରେକ ଗୁଣରେ ବସାଇଲା
ପଙ୍ଖମାନ ଉଡ଼ାଇ ଯେ ଯାହା ଠାବରେ ଲଗାଇଲା । ୧୨ ।

ମନ୍ତ୍ରବଳେ ଶୁଖିଲା ପଙ୍ଖ କଣ୍ଟା କରି
ସମସ୍ତ ଲଗାଇଲା ନେଇ ମନ୍ତ୍ର ବଳ କରି । ୧୩ ।

ସେତେ କୃତ୍ୟ କରି ବାହୁଡ଼ି ଅଇଲା
ନିଜ ମନ୍ଦରେ ଯାଇ ପ୍ରବେଶ ହୋଇଲା । ୧୪ ।

ଗୁରୁ ସ୍ନାହାନ ତର୍ପଣ ବେଗେ ସାରି
ବାହୁଡ଼ି ଆସନ୍ତେ ବାଟରେ ବୃକ୍ଷ ଦେଖିଲେ ବ୍ରହ୍ମଋଷି । ୧୫ ।

ସନ୍ଧିଣ ଦେଖିଲେ ମୁଁ ପଙ୍ଖଝାଡ଼ି ଡାଙ୍କ କରି ଯାଇଥିଲି,
ସେହା କଲା କେହୁ ମୁଁ ତାହାକୁ ହାରିଲି । ୧୬ ।

ସେତେ ବୋଲି ଦ୍ରୋଣେ ତୁରିତେ ଅଇଲେ
ଘରେ ଆସି ଦ୍ରୋଣେ ଭୋଜନେ ବସିଲେ । ୧୭ ।

ବୋଇଲେ ହରିତାଗୋ ସେଠାକୁ ଆସିଥିଲେ କିସେ
ବୋଇଲେ ସେଠାକୁ ଆସିଥିଲା ବାସବର ପୋସେ । ୧୮ ।

ବିସ୍ମିତ ବୋଇଲେ ସେହାର ଛେଦନ
କାଲି ପଚ୍ଚାରି ବୁଝିବା ସେକଥା ଅର୍ଜୁନ । ୧୯ ।

ରାତ୍ର ମାହିଲେ ଉଦୟ ହୋଇଲେ ମାରତଣ୍ଡ
ସମସ୍ତେ ଆଖଡ଼ାଶାଳେ ହୋଇଲେକ ରୁଣ୍ଡ । ୨୦ ।

ଗୁରୁ ବୋଇଲେ ଅର୍ଜ୍ଜୁନ ଗଲୁ ସେ ଆମ୍ଭର ମଦ୍ଧରେ
ଆମ୍ଭଙ୍କୁ ଉଦ୍ଦେଶି ଗଲୁ ତୁ ଯେ ଗତ ଯେ ପଥରେ । ୨୧ ।

ଯେ ବୃକ୍ଷରାଜକୁ ବାବୁ କେବଣ କୃତ୍ୟ କଲୁ
ଶୁଣିଲେ କୁରୁବୀରେ ଗୁରୁଙ୍କ ମୁଖରୁ । ୨୨ ।

ବାବୁ ସମସ୍ତ ପଞ୍ଚ ଖଣ୍ଡି ସୁମନ୍ତ ବଳେ ଗଲା ଭଲା
ଶୁଝିଲା କଞ୍ଚା ଶରେ ପବନା ଶରେ ଉଡ଼ାଇ ଖଣ୍ଡିଲା । ୨୩ ।

ଶୁଣି କରୁଣାରେ ହୋଇଲେ ତରସ୍ତ
ନ ଜାଣି ତରଳ ଖଣ୍ଡେ ପଡ଼ିଲା କାଠ ପୋକ । ୨୪ ।

ବାବୁ ତୋହର ଉଦ୍ଧତରେ କୃଷ୍ଣମ୍ଭେ ବଗ୍ରହ୍ୱ ପଡ଼ିବ
ଅବଶ୍ୟ ଦୁର୍ଯୋଧନ ଯୁଧେଷ୍ଠିଙ୍କର ସଗ୍ରାମ ହୋଇବ । ୨୫ ।

ଦ୍ରୋତକ ବଚନ ଶୁଣିଣ ଧୃତରାଷ୍ଟ୍ର
ମନରେ ଗରୁଣ୍ଟ୍ରା ବାହାରେ ଭାବ ତୁଷ୍ଟି । ୨୬ ।



[ ମହାଭାରତ—ଆଦିପର୍ବ,
ସାଂସ୍କୃତିକ ବ୍ୟାପାର ବିଭାଗ ପ୍ରକାଶିତ (୧୯୬୫)ରୁ ସଂଗୃହୀତ ]

# ସୀତା ସ୍ୱୟମ୍ବର

—ବଳରାମ ଦାସ

ଶ୍ରୀରାମ ବଙ୍କମ ମୂର୍ତ୍ତି ଦେଖି ସୀତା
ମନ ପ୍ରକୃତ ଏକ କରି ଜନକ ଦୁହିତା ।

ନୟନର ସଙ୍ଗେ ପେଷିଲା ଏହ୍ୱାନ୍ତ
ବରିବଇ ଏ ମୋହର ଅଟଇ ନିଜ କାନ୍ତ ।

ଧନୁର ଗୁଣ ଯହୁଁ ରାମ ଆମର୍ଷିଲେ
ସୀତଙ୍କର ଦୃଷ୍ଟି ତହିଁ ସଙ୍ଗେ ନେଲେ ।

ସ୍ୱର୍ଗେ ସାଧୁ ସାଧୁ କରନ୍ତି ଦେବଗଣ
ଧନ୍ୟ ରୁ ଶ୍ରୀରାମ ତୋହର ଷଣ୍ଢି ପଣ ।

ସଭାର ଯେ ଲୋକମାନେ ଆଶ୍ଚର୍ଯ୍ୟ ହୋନ୍ତି ଚାହିଁ
କେ ବୋଲଇ କେବଣ ପୁଣ୍ୟ ସ୍ତ୍ରୀ ଏହାର ଆଇ ।

ଅଣିକା କଥା ଯାହା ଶୁଣିଲୁ ନ ଥିଲୁ
ନୟନେ ଦେଖିଲୁ ବୋଲି ଥୋକାଏ ବୋଇଲୁ ।

ଯେଥୁଁ ଅନନ୍ତରେ ଶ୍ରୀରାମ ଧନୁ ଧରି
ପୁଣ ପୁଣ ଗୁଣ ଯେ ଆଣନ୍ତି ଅଟାରି ।

ଆତଯାତ କରି ଆକର୍ଷିଲେ ଯହୁଁ
କୋଦଣ୍ଡର ବଳରାମ କଳିଲେକ ତହୁଁ ।

ଅତଦ୍ଧଂ ଆମର୍ଷଣେ ନିବଳ ଶରାସନ
ମଡ଼ ମଡ଼ ଶବଦ ଶୁଭଇ ଘନ ଘନ ।

ମଧ୍ୟରୁ ଭାଜିଲା ଯେ ବେନି ଖଣ୍ଡ ହୋଇ
ଦେଖି ରାଜାମାନେ ଯେ ଗଲେକ ପଳାଇ ।

ପୃଥିବୀ କମ୍ପିଲା ଯେ ଉଲ୍କାପାତ ହୋଇ
ଆଦିତ୍ୟ ଦେବତା ଯେ ଭସ୍ମେଣ କ୍ଷଣେ ରହି ।

ସପତ ସମୁଦ୍ର ଲହରୀ ହୋଇଲାକ ଥିର
ସ୍ୱର୍ଗରେ ତରସ୍ତ ଯେ ହୋଇଲେ ସର୍ବ ସୁର ।

ଡରେ ସ୍ତମ୍ଭୀଭୂତ ହୋଇଲା ସମୀର
ଏତେକ ପ୍ରାକର୍ମ ଯେ ଅଟଇ ଧନୁର ।

ପର୍ଶୁରାମ ଶୁଣି ଛାଡ଼ିଲା ନିଜ ଗର୍ବ
ବୋଇଲା କମ୍ପିତ ମୋତେ ହୋଇଲା ଅପୂର୍ବ ।



[ ଦାଣ୍ଡୀ ରାମାୟଣ—ଆଦି କାଣ୍ଡରୁ ସଂଗୃହୀତ । ]

# ତ୍ରିବିଧ ଭକ୍ତି ଲକ୍ଷଣ

—ଜଗନ୍ନାଥ ଦାସ

### ବିଦେହ ଉବାଚ

ଏମନ୍ତେ ବିଦେହ ରାଜନ । ମନେ ବିସ୍ମର ଚିତ୍ତ ଜ୍ଞାନ ॥
ଆନନ୍ଦେ ଶିରେ କର ଦେଇ । ବୋଲନ୍ତି ନିସ୍ତରିଲି ମୁହିଁ ॥
ତୁମ୍ଭେ ନିର୍ମଳ ଯୋଗୀ ଗଣ । କହିବା ଭକତ ଲକ୍ଷଣ ॥
କି ରୂପେ ଭ୍ରମନ୍ତି ଜଗତେ । କୃଷ୍ଣ ଭଜନ ଅନୁଗତେ ॥
କିବା କହନ୍ତି ବାକ୍ୟସାର । କି ଧର୍ମ କରନ୍ତି ଆଚାର ॥
ତାହାଙ୍କୁ ଜାଣିବା କେମନ୍ତେ । କହ ସୁଦୟା ଯେବେ ମୋତେ ॥

### ହବିରୁବାଚ

ହବି ବୋଲନ୍ତି ତାହା ଶୁଣି । ଶୁଣ ବିଦେହ ନୃପମଣି ॥
କୃଷ୍ଣ ଭକତ ଏ ସଂସାରେ । ପ୍ରଚରେ ତ୍ରିବିଧ ପ୍ରକାରେ ॥
ଉତ୍ତମ ମଧ୍ୟମ ପ୍ରାକୃତ । ଯାହାର ଲକ୍ଷଣ ଯେମନ୍ତ ॥
ତାହା କହିବା ଶୁଣ ଏବେ । ରାଜନ ପଚାରିଲୁ ଯେବେ ॥
ସକଳ ଘଟେ ନାରାୟଣ । ବସନ୍ତି ଅନାଦି କାରଣ ॥
ସେ ନାରାୟଣ ଦେହ ଗତେ । ବସନ୍ତି ଭାବ ଅନୁମତେ ॥
ଏ ଭାବେ ଦୃଢ଼ ଯାର ମନ । ସେ ପ୍ରାଣୀ ଭକତ ଉତ୍ତମ ॥
ଈଶ୍ୱରଠାରେ ପ୍ରେମ କରେ । ମିତ୍ର ଭାବନା ସାଧୁଠାରେ ॥
କରୁଣା ଅଜ୍ଞାନ ଲୋକରେ । କରେ ଉପେକ୍ଷା ଶତ୍ରୁଠାରେ ॥
ସେ ଭକ୍ତ ମଧ୍ୟମ ଅଟଇ । ଯେଣୁ ସେ ଭେଦକୁ ଦେଖଇ ॥

ପ୍ରଥମାଠାରେ ଶ୍ରଦ୍ଧା ବଢ଼ି । ହରି ପୂଜାକୁ ଯେ କରଇ ॥
ନ ସେବେ ବିଷ୍ଣୁର ସେବକ । ଇତର ମଣେ ଅନ୍ୟ ଲୋକ ॥
ତାକୁ ପ୍ରାକୃତ ବୋଲି କହି । ତଥାପି ଭକ୍ତ ସେ ବୋଲାଇ ॥
ଇନ୍ଦ୍ରିୟ ଦ୍ୱାରେ ଅର୍ଥମାନ । ଗ୍ରହଣ କଲେ ହେଁ ଯେ ଜନ ॥
କାହାକୁ ଦ୍ୱେଷ ନକରଇ । କିଛି ହିଁ ହରଷ ନୁହଁଇ ॥
ସକଳ ବିଷ୍ଣୁ ମାୟା ମଣି । ଉତ୍ତମ ଭକ୍ତେ ତାକୁ ଗଣି ॥
ଦେହର ଜନ୍ମ ମୃତ୍ୟୁ ଦୁଇ । ସଂସାର ଧର୍ମ ଏ ବୋଲାଇ ॥
ଇନ୍ଦ୍ରିୟ ମାନଙ୍କର ଶ୍ରମ । ପ୍ରାଣୀର କ୍ଷୁଧା ତୃଷ୍ଣା ଧର୍ମ ॥
ମନର ଭୟ ବୁଦ୍ଧି ଧର୍ମ । ତୃପ୍ତ ଏଣେ ଯେ ନୋହେ ଭ୍ରମ ॥
ହରିର ସ୍ମରଣ କରଇ । ଉତ୍ତମ ଭାଗବତ ସେହି ॥
ଯାହାର କାମ କର୍ମବୀଜ । ବାସନା ମିଣି ହୁଏ ଛନ୍ନ ।
ଚିତ୍ତରେ ନୁହଇ ସମ୍ଭବ । ଆଶ୍ରୟ ଏକା ବାସୁଦେବ ॥
ଉତ୍ତମ ଭକ୍ତରେ ବୋଲଇ । ଶୁଣ ସୁଜନେ ମନ ଦେଇ ॥
ଜନ କରଣ ଯାର ମନ । ନ ଘେନେ ଦେହେ ଅଭିମାନ ॥
ଜାତି ଆଶ୍ରମ ବର୍ଣ୍ଣ ଧର୍ମ । ଏ ଅହଙ୍କାରେ ନୋହେ ଭ୍ରମ ॥
ହରିର ପ୍ରିୟ ସେହି ପ୍ରାଣୀ । ଭକତ ମଧ୍ୟେ ପରମାଣି ॥



(ଭାଗବତ—୧୧/୬ରୁ ସଂଗୃହୀତ)

# ଛଅ ଋତୁ ବର୍ଣ୍ଣନା

—ଦେବଦୁର୍ଲ୍ଲଭ ଦାସ

ଏ ମହା ଗ୍ରୀଷ୍ମ ଋତୁ ବୈଶାଖର ଶେଷ
ବହିଲା ଝଞ୍ଜା ପବନ କୃଶାନୁ ବତାଶ ।
ପାଚିଲେ ଆମ୍ବ ପଣସ ତାଢଲେ ସଲିଳ,
ଜଳିଲା ଶରୀର ମୋ ଝଳିଲା କଳେବର । ଘୋଷା ।

ମୁଁ ଟଗୋ ମଲି ମଲି
କାନ୍ତ ମୋ ଉପେକ୍ଷି ଗଲେ କଉଁ ଦୋଷ ଲଲି ।

ଗମ୍ଭୀର ଘରରେ ଗୋ ଗ୍ରୀଷ୍ମେ ନୋହେ ଶୋଇ,
ଦକ୍ଷିଣ ମେଲା ମନ୍ଦରେ ପ୍ରଭୁ ସଙ୍ଗେ ରହି ।
କର୍ପୂର ଚନ୍ଦନ ସୁଶୀତଳ ଜଳେ ଗୋଳି,
ସ୍ୱାମୀ ସଙ୍ଗେ ବିବିଧ ବିନୋଦେ ବୋଲାବୋଲି । ୧ ।

ଫୁଟି ତାଳ ସଜ ପଣା ପଇଡ଼ କଦଳୀ,
କର୍ପୂର ମରିଚ ଝଣ୍ଟ ସିଙ୍ଗଡ଼ା ତାମ୍ବୁଳ ।
ମଣୋଜ୍ଞ ସାରଣ ସେହୁ ଖୁଆଇଣ ଖାଇ,
ସୁସ୍ଥ ପାଇ ସ୍ୱାମୀ ଭୁଜ ପଞ୍ଜରେଣ ଶୋଇ । ୨ ।

ଋଷଭ ସମ୍ପୂର୍ଣ୍ଣେ ସଖି ଆଷାଢ଼ର ଅନ୍ତେ,
ଶ୍ରାବଣେ ପ୍ରବେଶ ଗୋ ଜଳଦ-ଋତୁ ହେବାନ୍ତେ ।
ଗାଜିଲେ ଗଗନେ ସେହୁ ସାଜିଲେ ବରଷା,
କି ଜାଣି ନବଢ଼ ଘୋର ଅନ୍ଧକାର ନିଶା । ୩ ।

ଘଡ଼ଘଡ଼ି ଉପରେ ପଡ଼ଇ ଚଡ଼ଚଡ଼ି,
ଚଡ଼ଚଡ଼ି ଉପରେ ନିର୍ଘାତ ପଡ଼େ ମାଡ଼ି ।
ବିଜୁଳି ଝଁମକେ ଗୋ ଉଠେ ହୃଦୟା,
କେସନେ ବଞ୍ଚିବ ମୋର କୋଳେ ନାହିଁ ନାହା । ୪ ।

କମଳିନୀ ବିଧଂସିଲେ, ଅବନୀ ଉଛସି,
ମାଢଲେ ମଣ୍ଡୂକେ ଯେ ଡାହୁକ ଡାକେ ମିଶି ।
ନବା ଯୋଡ଼ ବଢ଼ିଲେ, ଜଡ଼ିଲେ ପୁନାଗସ୍ତ,
ପୁଟବେଶ ଯୁବତୀ କାନ୍ତ ପଥ ଅନୁସର । ୫ ।

ପ୍ରବାସୀ ପୁରୁଷମାନେ ସବଁକାର୍ଯ୍ୟ ଛାଡ଼ି,
ଘରକୁ ଅଇଲେ ପ୍ରିୟା ଗୁଣ ମନେ ପଡ଼ି ।
ଏକ ମାତ୍ର ମୋର କାନ୍ତ ନଇଲେ ମୋ ପାଶ,
କଷ୍ଟସ୍ଥ ଜାଣିଲି ମୋର ତେଜିଲେ ମୁହାସ । ୬ ।

ଶ୍ରବଣର ଅନ୍ତେ ସଖି ଅଶ୍ୱିଣ ପଶନ୍ତେ,
ପ୍ରବେଶ ଶରଦ ଋତୁ ପ୍ରତେକ ଆଦତ୍ୟେ ।
ଗଗନୁ ଝଡ଼ିଲ ହିମ ମନ୍ଦ-ଫଣୀ ପଶେ,
ବରଷା ବଞ୍ଚାଇ ମେଘ ନାନା ବର୍ଣ୍ଣ ଦଶେ । ୭ ।

ଉତ୍ତରୁ ଅଇଲ ଶୀତ ବିକାଶି କୁମାସ୍ତ,
କାନ୍ତ ଥିଲ କାମିନୀଙ୍କି ହୃଦୁଁ ଅପସର ।
ଫୁଟିଲେ କୈରବ କଅ ଚନ୍ଦ୍ରକାନ୍ତ ବଢ଼େ,
ଶ୍ରୋଣେନ୍ଦ୍ରା ରତ ଆରତେ ଶ୍ରୋଣେନ୍ଦ୍ରକ ଲୋଡ଼େ । ୮ ।

କାର୍ତ୍ତିକ ସରନ୍ତେ ସଖି ମଗୁଶିର ଆସେ,
କାକର ପଡ଼ିଲ ହିମ ଋତୁ ପରକାଶେ ।
ଦହିଲା କମଳ ବନ ବହିଲ ଉତ୍ତର,
ସ୍ଥିର ହୋଇଲ ସିନ୍ଧୁ ସର୍ଧ୍ୟର ଲହର । ୯ ।

ମରୁଆ ହସିଲ, କୁନ୍ଦ ଦେଖିଣ ବିକାଶ,
ଗାଇଲେ ଗାଆନ୍ତା ଗୀତ ଗୁଣ୍ଡକେଶ୍ରୀ ରସ,
ଛୁଟିଗଲେ ନଦୀ ଘଙ୍ଗ, ଫିଟିଗଲେ ବାଟ,
ଧନ ଆସି ପାହୁଗଲା କାନ୍ତ ନାହିଁ ଭେଟ । ୧୦ ।

ଶ୍ରୀଙ୍ଗଡ଼ା କେସର ସଖି ଗୁଆଘୃତେ ପୋଇ,
କର୍ପୂର ମରିଚ ମେଳ ମିଠା ଦୁଧେ ମୋହି,
ମାଣଆ ଖଣ୍ଡ ମିଶାଇ ବଟା ଭରି ଥୋଇ,
ଶୟନ ପଲଙ୍କେ କାନ୍ତ ଅଧରେ ଯୋଗାଇ । ୧୧ ।

ପୁଷର ଅନ୍ତରେ ସଖି ମକର ପ୍ରଖ୍ୟାତ,
ପ୍ରବେଶ ଶିଶିର ଋତୁ ପବଣ ଜଗତ,
ମକର ସ୍ନାହାନ ଜନେ ଧର୍ମ ଅର୍ଥେ କରି,
କୁହୁଡ଼ି ପଡ଼ିଲା ଗୋ ଜାଡ଼ିଲା ବସୁନ୍ଧରୀ । ୧୨ ।

ଫୁଟିଲା ମାଧବୀ ଗୋ ଛୁଟିଲ କର୍ଣ୍ଣିଫୁଲ,
ଉଠିଲା କଣ୍ଟକ କଠି କାମ-ଶର ଶୂଳ,
ଲେଉଟିଲ ଉତ୍ତରୀ ପବନ ଜଳ ସ୍ଥାନ,
ଉଠିଲା ଲକ୍ଷ୍ମୀ ସିନ୍ଧୁ ଅନନ୍ତର ଫେନ । ୧୩ ।

କାକଗର୍ଭ ଦେଖି ସଖି ହୋଇଲି ଚକିତ,
ଏତେବେଳେ ନ ଭେଟିଲି ଗଉଣୀବାରତ,
କୁରୁବେଳ ଚଉଁରିଲେ ଅତି ଉଗ୍ର ଗନ୍ଧ,
ଚୂତର ବକୁଳ ଦେଖି କୋକିଳ ଆନନ୍ଦ । ୧୪ ।

ମକର ସରନ୍ତେ ସଖି ଫଗୁଣର ଅନ୍ତେ,
ଅଇଲା ବସନ୍ତ ଋତୁ ଅନଙ୍ଗ ସଙ୍ଗତେ,
ବହିଲାକ ମଳୟ ପବନ ଗନ୍ଧ ଶୂଳେ,
ପଲ୍ଲବିଲେ ତରୁଲତା, ଫୁଟିଗଲେ ଫୁଲ । ୧୫ ।

ସ୍ୱେଚ୍ଛା ରହିଲ ସଖି ଗୋବିନ୍ଦଙ୍କ ଦୋଳ,
ସର୍ବ ସୁଖ ଦେଇ ଗଲେ ମଦନ-ଗୋପାଳ ।

କହୁଁ କହୁଁ ଚୂତ ବୃକ୍ଷେ ଧରିଗଲେ ବସି,
କୋକିଳ କ୍ରୀଡ଼ଇ ଚୂତ ଡାଳେ ଡାଳେ ବସି । ୧୬ ।

ଚଇତ ମାସରେ ରାଧାମାଧବ ସୁମର,
ବୃନ୍ଦାବନେ ପଶିଣ ଲୋଡ଼ଇ ଅନୁସର ।

ଦେଖଇ ପଲ୍ଲବ ଲତା ତରୁ ଫଳ ଫୁଲେ,
ଦେବ କହେ ସଖି କର ଧରି ଧରି ବୁଲେ । ୧୭ ।

ଇତି ଶ୍ରୀ ରହସ୍ୟ ମଞ୍ଜରୀ ଦ୍ୱାଦଶ ଛାନ୍ଦେ,
ଦ୍ୱାଦଶ ମାସାଦି ଷଡ଼ଋତୁ ବନ୍ଧେ ।

ତ୍ରୟୋଦଶ ଛାନ୍ଦ ବର୍ଣ୍ଣିବେ କେବଣ ବୋଧ,
କହିବାକୁ ଆଜ୍ଞା ହେଉ (ପ୍ରଭୁ) ଏଥିର ପ୍ରବୋଧ । ୧୮ ।



( ରହସ୍ୟ ମଞ୍ଜରୀ—ଦ୍ୱାଦଶ ଛାନ୍ଦରୁ ସଂଗୃହୀତ )

# ବାରମାସୀ କୋଇଲି

—ଶଙ୍କର ଦାସ

ଆରେ ବାବୁ ଗୁପଧାରି ! କି ଦଣ୍ଡ ହେଲା ତୋହର
କାହି କଉଶଲ୍ୟା ବୋଲନ୍ତି କୈକେୟୀ ଅରଜିବ କେଉଁ ଶିରୀ
ଲୋ କୋଇଲି ।   ।

ଏହି ମଗୁଶିର ମାସ । କାକର ପଡ଼େ ବିଶେଷ ।
ଶୀତଳ ପବନ ବହେ ଘନ ଘନ ମୋ ପୁଅ କରିବ କିସ
ଲୋ କୋଇଲି । ୨ ।

ପୁଷ ମାସେ ବଡ଼ ଶୀତ । କଷ୍ଟ ହୁଏ ଅପ୍ରମିତ ।
ବିନା ବସନରେ ବୃକ୍ଷ ବକଳରେ କି ଦୁଃଖ ନ ହେବ ଜାତ
ଲୋ କୋଇଲି । ୩ ।

ମାଘରେ ତହୁଁ ଅଧିକ । ଶରୀର ଦୁଃଖଦାୟକ ।
ଅମୂଲ୍ୟ ସୁପାଠ ତେଜି ରଘୁପତି ବୁଲଇ କାନନ ସାଜ
ଲୋ କୋଇଲି । ୪ ।

ଫଗୁଣେ ଫଗୁ ଖେଳରେ । ମାତିଛନ୍ତି ଘରେ ଘରେ ।
ମୋ ଅଝୁଣୀ ଧନ ମୋଠୁଁ ହୋଇ ଭିନ୍ନ ଭସାଇଲା ଶୋକ ନୀରେ,
ଲୋ କୋଇଲି । ୫ ।

ଚଇତ୍ର ମାସର ଖରା । ନୀରସ କରଇ ଧରା,
ଶରୀରରୁ ଝାଳ ବହେ ଅନର୍ଗଳ ପରାଣ ହୁଏ ଘାବରା,
ଲୋ କୋଇଲି । ୬ ।

ବଇଶାଖ ଖର ଗ୍ରୀଷ୍ମ । ବାହାରକୁ ନୋହେ ଯାଇ;
କେଉଁ ବୃକ୍ଷ ମୂଳେ ଜୀବନ ବଞ୍ଚଲେ ଥିବ ମୋର ପୁଅ ରହି,
ଲୋ କୋଇଲି । ୭ ।

ଜ୍ୟେଷ୍ଠେ ମୋ ଜ୍ୟେଷ୍ଠ ନନ୍ଦନ । ଜାନକୀ ସହ ଲକ୍ଷ୍ମଣ,
ନାନା ପକ୍ୱ ଫଳ ଖୋଜି ବୁଲୁଥିବେ ବଧିର ଏ ବଡ଼ମ୍ବନ,
ଲୋ କୋଇଲି । ୮ ।

ଆଷାଢ଼ ମାସରେ ମେଘ । ଗରଜିଲେ ଯେସନ୍ତେ ବାଘ ।
ବେଳେ ବେଳେ ଦୃଶ୍ୟ ହୁଅଇ ଅଦୃଶ୍ୟ ଘୋଟିଯାଏ ଚଉଦିଗ
ଲୋ କୋଇଲି । ୯ ।

ଦେଖ ଧାର ଶ୍ରାବଣ । ଜଳ ପଡ଼େ ଅନୁକ୍ଷଣ ।
ଘର ଘାଟ ନାହିଁ ମୁଁ ଦୁଃଖୀ ସଙ୍ଖାଳି କି ରୂପେ କାଟିବ ଦିନ
ଲୋ କୋଇଲି । ୧୦

ଭାଦ୍ରବ ହେଲେ ପ୍ରବେଶ । ସୁ-ନିର୍ମଳ ଦଶଦିଶ
ଅତି ସୁକୁମାରୀ ଜନକ କୁମାରୀ ମନେ ଖିନ୍ନ ଥିବେ କିସ
ଲୋ କୋଇଲି । ୧୧ ।

ଆଶ୍ୱିନେ ଚନ୍ଦ୍ର କିରଣ । କରଇ ମନ ହରଣ ।
କେତେ ମତେ କେତେ ଉତ୍ସବ କରନ୍ତେ ଘରେ ଥିଲେ ରଘୁବୀର
ଲୋ କୋଇଲି । ୧୨ ।

ଏ ମହା କାର୍ତ୍ତିକ ମାସ । ଭଜିଲେ ଶଙ୍କର ଦାସ
ସୀତା ସଙ୍ଗେ ଯେବେ ରଘୁକୁଳମଣି ଭୋଗ କଲେ ବାରମାସ
ଲୋ କୋଇଲି । ୧୩ ।

●

# ତିଳୋତ୍ତମାର ନୃତ୍ୟ

—ନରସିଂହ ସେଣ

ଗାଇଲେ ଗାୟେଣୀ ମୃଦୁରସେ ରସ ଗୀତ ।
ସଭାରେ ସମସ୍ତଙ୍କର ବଳଅଛି ଚତ୍ତ । ୧ ।

ମୃଦଙ୍ଗ ବଂଶୀ କଂସାଳ ଦୋସରୀ କାହାଳ ।
ଉପାଙ୍ଗ ତାଳ ବୀଣାର ଶବଦ ଚହଳ । ୨ ।

ସକଳ ବାଦ୍ୟଙ୍କର ସେ ନାଦ ଏକ ହୋଇ ।
ବ୍ରହ୍ମଲୋକ ଭେଦ ନାଦ ବଷ୍ଣୁଲୋକ ଯାଇ । ୩ ।

କ୍ରମେଣ ଶବଦ ସ୍ଫୁରେ ସର୍ବ ଦ୍ୱୀପାନ୍ତର ।
ତାଳ ଶନ ମୁଦ୍ରା କର ଗୀତ ମନୋହର । ୪ ।

ତଲୋତ୍ତମ ପଶି ତହିଁ ପାଦଘାତ କଲା,
ବବଧ ବନୋଦ କର ନୃତ୍ୟରଙ୍ଗେ କଲା । ୫ ।

ଅଣ୍ଟାରେ ହାତ ବାଙ୍କ ନୟନରେ ଘୂର୍ଣ୍ଣିଲା ।
ସମସ୍ତ ସଭାଜନଙ୍କ ମନ ହର ନେଲା । ୬ ।

ବହୁଭାବ କର ନାଚୁଅଛି ସେ ସୁନ୍ଦରୀ ।
ତ୍ରିଭଙ୍ଗୀ ଲଳତ ତନୁ ଅତ ମନୋହାରୀ । ୭ ।

କାଞ୍ଚୁଲି ଫିଟିଣ ସେ ଦଶଇ କୁଚଭାର ।
ହୃଦେ ଲମ୍ବିଅଛି ଗଜ ମୁକୁତାର ହାର । ୮ ।

ହସ୍ତକ କରଣ ସେ ନାଚଇ ଭାବ ଘେନ ।
ପ୍ରଉଢ଼ଭାବ ଲୀଳାଭାବ ନାଚଇ କାମେନୀ । ୯ ।

ଚଳଇ ଅଳକା ଘୃରୁ କପୋଳର କଣ୍ଠ ।
କମଳ ଲେଭେ ଉଡ଼ନ୍ତ କମଳର ପନ୍ତ । ୧୦ ।

ପାଦାଘାତ ବାଳୀ ଯେ ଦଅଇ ଘନ ଘନ ।
ନେପୁରର ଶବଦ ଶୁଭଇ ରୁଣୁଝୁଣୁ । ୧୧ ।

ଲୁଗା ଫେର ଦେଖି ତାର ପୀଡ଼ଇ ମଦନ ।
ହୃଦଂ ଦମ ଦମ ହୋଇ ଅଙ୍ଗୁ ହରେ ଜ୍ଞାନ । ୧୨ ।



( ପରମଳା କାବ୍ୟ – ୨୪ଶ ଛନ୍ଦରୁ ସଙ୍ଗୃହୀତ )

# ଶ୍ରୀକୃଷ୍ଣ ଲୀଳା କଥନ

—ଶିଶୁଶଙ୍କର ଦାସ

ଭାବକୁ ନିକଟ ଯେ ଜଗତଜନ ବନ୍ଧୁ
ଆରତ ଜନର ଯେ କରୁଣାମୟ ସିନ୍ଧୁ ଗୋ । ୧ ।

ତାହାଙ୍କ ଚରଣେ ମନ ଧରି ସହଚରି
ଉଷା ମୁଖ ବୁଝି ରସ ବଚନ ପସରି ଗୋ । ୨ ।

ଅନାଦି ପୁରୁଷ ଯାର ଆଦି ଅନ୍ତ ନାହିଁ
ଅବନୀ ଜନମ ହେଲେ କ୍ଷିତି ଭାର ପାଇଁ ଗୋ । ୩ ।

ମଥୁରା ନଗରେ ଜାତ ବସୁଦେବ ଘରେ
ଗୋପରେ ବଢ଼ିଲେ ଯାହିଁ କଂସ ରାଜା ଡରେ ଗୋ । ୪ ।

ପୂତନା ଶକଟା ବତ୍ସା ବକା ଅଘାସୁର
ପ୍ରଲମ୍ବା ଧେନୁକା ତୃଣା କେଶୀ ମହାବୀର ଗୋ । ୫ ।

ଶଙ୍ଖଚୂଡ଼ ବେଦଚୋର ବ୍ୟୋମାସୁର ଆଦି
ଲୀଳାମାନେ ମାରିଲେ ଅମରବୃନ୍ଦର ବାଧି ଗୋ । ୬ ।

କୁବେର ନନ୍ଦନ କଲେ ଶାପରୁ ମୁକୁତ
ଗିରି ତୋଳି ପୁରପତି ଗର୍ବ କଲେ ହତ ଗୋ । ୭ ।

ଶିଶୁ ବତ୍ସ ହରଣ ହାରିଲା ଯାକୁ ବ୍ରହ୍ମା,
କାଳୀ ଦଳି ରୁହାଇଲେ କାଳିନ୍ଦୀ ମହିମା ଗୋ । ୮ ।

ଭାବକୁ ନିକଟ ଯେ କରୁଣାମୟ ଭଣି
ରମିଲେ ଗୋପରମଣୀ ଭାବରଙ୍ଗେ ତୋଷି ଗୋ । ୯ ।

କୁବଳୟା ହସ୍ତୀ ଅଷ୍ଟମଲ୍ଲ ମୂଳେ କଂସ
ଲୀଳାମାତ୍ରେ ମାରଣ ରଖିଲେ ଯଦୁ ବଂଶ ଗୋ । ୧୦ ।

ଜରାସନ୍ଧ ରାଜାକୁ ଅଠରଦେଲ ଜିଣି
କଣ୍ଟେ କାଳ ଦମନ ନାଶି ଯଦୁମଣି ଗୋ । ୧୧ ।

କୁଶସ୍ଥଳୀ ପୁର ସିନ୍ଧୁ ଭିତରେ ଉତ୍ତମ
ନବର ରଚିଲେ ଚନ୍ଦ୍ର ଅତି ମନୋରମ ଗୋ । ୧୨ ।

ଷୋଳସହ୍ର ଶଏ ଅଷ୍ଟ ଶୂର ଧ୍ୱଜକେମା
ଅଷ୍ଟପାଟ ବଂଶ ଶ୍ରେଷ୍ଠ ସ୍ୱାମ୍ନକର ଜେମା ଗୋ । ୧୩ ।

ତାହାଙ୍କର ଜ୍ୟେଷ୍ଠ ପୁତ୍ର ପ୍ରତକ୍ଷେ ମଦନ,
ଅନିରୁଦ୍ଧ ଦେଖିଲୁ ତୁ କାମର ନନ୍ଦନ ଗୋ । ୧୪ ।

ଅଗମିତ ପୁର ତାର ଦୁର୍ଲ୍ଲଭ ଦର୍ଶନ
ତୋହୋର ବେଦନା ଅର୍ଥେ କରିବ ଗମନ ଗୋ । ୧୫ ।

ପାରିଲେ ଆଣିମି ମନ ନକର କାତର
ଶୁଣିଣ ସୁନ୍ଦରୀ ବନ୍ଦେ ନୟନରୁ ନୀର ଗୋ । ୧୬ ।



( ଉଷାଭିଳାଷ—ଷଷ୍ଠ ଛାନ୍ଦରୁ ସଂଗୃହୀତ )

# ଧନ୍ୟ ଧନ୍ୟ ନୀଳଗିରି ବାସୀ

—ସାଲବେଗ

ଧନ୍ୟ ଧନ୍ୟ ନୀଳଗିରିବାସୀ ଭ୍ରମୁଥିଲେ ସାଧୁ ସଙ୍ଗେ ମିଶି
ପେଟ ପୂରେଇଣ କୈବଲ୍ୟ ପାଉନ୍ତି ମୁଖେ ବୋଲୁଥାନ୍ତି ଏକାଦଶୀ-ନୀଳଗିରି
ସନ୍ଧି ବଳେ କରିଚନ୍ତି ସମନ୍ୱୟ । ୧ ।

ପ୍ରଭୁ ବଡ଼ଦାଣ୍ଡ ଦେଖି ହେଲି ତୋଷ ରେଣୁ ଦେନି ମୁଖେ କଲି ଗ୍ରାସ
ସିଂହଦ୍ୱାରଠାରେ କୈବଲ୍ୟ ପାଉନ୍ତେ ଟଙ୍କ ତୋଷଣୀରେ ମନ ତୋଷ । ୨ ।

ସିଂହଦ୍ୱାରେ ବାଜେ ବେତବାଡ଼ି ବାଜନ୍ତେ ପାତକ ଯାଏ ଗୁଡ଼ି
ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ସନ୍ଥଜନମାନେ ଠେଲାଠେଲି । ୩ ।

ପ୍ରଭୁ ବାଇଶି ପାବଚ୍ଛ ଗଲି ସୁଖେ କୈବଲ୍ୟ ପସରା ବେନି ପାଖେ
ବ୍ରାହ୍ମଣ ଚଣ୍ଡାଳ ଏକମେଳ ହୋଇ କୈବଲ୍ୟ ପାଉନ୍ତି ମୁଖେ ମୁଖେ । ୪ ।

ଏଥୁ ଅନନ୍ତରେ ଗଲି ଖରେ ମୁକ୍ତି ମଣ୍ଡପ ଯେଉଁଠାରେ
କଳପବଟକୁ ପ୍ରଦକ୍ଷିଣ କରି ଆଲିଙ୍ଗନ କଲି ପ୍ରେମ ରସେ । ୫ ।

ରୋହିଣୀକୁଣ୍ଡ ପାଦୁକା ରଜ ସିଂହମାଡ଼ି ବସିଅଛି ଗଜ
ତା ତଳୁଁ ଅବା ମୁଁ କେତେ ବଡ଼ ହେବି କାକ ପଡ଼ି ହେଲା ଚତୁର୍ଭୁଜ । ୬ ।

ଓଡ଼ିଆ ଜଗବନ୍ଧୁଙ୍କ ରାଣୀ ସୁବର୍ଣ୍ଣ ଥାଳରେ ପରଷଣି
ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ସନ୍ଥଜନମାନେ ଠେଲାଠେଲି । ୭ ।

କହେ ସାଲବେଗ ମୂଢ଼ମତି ରଙ୍ଗାଚରଣରେ ଥାଉ ମତି
ଶ୍ରୀଜଗନ୍ନାଥଙ୍କ ଚରଣେ ଶରଣ ଦୟା କର ମୋତେ ଲକ୍ଷ୍ମୀପତି । ୮ ।



# ଶରତ ବର୍ଣ୍ଣନା

—ଦୀନକୃଷ୍ଣ ଦାସ

କ୍ରମେ ପ୍ରବେଶ ହୋଇଲା ଶରଦ । କମଳ ଧରେ ଦର୍ଶିଲେ ବିଶଦ ।
କୃପଣ ହୋଇଲେ ଅମୃତ ଦାନେ । କେବଳ ଭୟଦ ହେଲେ ଗର୍ଜନେ ।
କକୁଭ ନଭ ଦର୍ଶିଲେ ଶୋଭା । କଲେ ପ୍ରକାଶ ପୁଷ୍ପବନ୍ତେ ପ୍ରଭା ।୧।
କଳୁଷ ନଦୀ ଜଳରୁ ତୁଟିଲେ । କମଳ କୁମୁଦମାନେ ଫୁଟିଲେ ।
କେଳି କଲେ ହଂସ କୋକ ସାରସ । କାମିନୀମାନଙ୍କ ସଙ୍ଗେ ବିଶେଷ ।
କମଳା ନେତ୍ର ଛଟକ ପ୍ରାପ୍ତେ । ନୀଳକାନ୍ତ ଶଫଙ୍ଗ କମ୍ପାଇ କାନ୍ତେ ।୨।
କନ୍ୟାମାସ ଦଶେ ପୂଜନ କୂଳ । କଠିନ ହୋଇଲେ ମହୀ କମ୍ପାଳ ।
କୃଷ୍ଣ ଅଙ୍ଗରେ ପୀତବାସ ପ୍ରାପ୍ତେ । କେଦାରେ ପକ୍ୱ ଶାଳୀ ଶୋଭାପାଏ ।
କୁମାରୀ ଗୀତ ଶୁଭେ ବହୁତ । କରଇ ହରଷ ଜନଙ୍କ ଚିତ୍ତ ।୩।
କଔଠାରେ ଶ୍ୱେତ ଛତ୍ର ଆକୃତ । କମନୀୟ ଦିଶେ ଶିଳିନ୍ଧ୍ର ପନ୍ତ ।
କାମଦେବ-ଶ୍ୱେତ-ଚାମର ପ୍ରାପ୍ତେ । କାଶତଣ୍ଡି ଫୁଲ ଚଳନ୍ତି ବାତେ ।
କୁସୁମବନ୍ତ ବନ୍ଧୁକ ଫୁଲ । କାନ୍ତା କାନ୍ତ ଦନ୍ତ ବସନ ତୁଲ ।୪।
କାନ୍ତା ରହିତ କାନ୍ତ ପ୍ରାପ୍ତେ ହୋଇ । କଳାପୀ କଳାପ ଅଙ୍ଗୁ ପକାଇ ।
କେକା ଛାଡ଼ି ହେଲେ ମଉନ ବ୍ରତ । କଲେ ହଂସ ମାନସର ତ୍ୟକତ ।
କଣ୍ଠରୁ ତାର-ଗ୍ରାମରେ ଯନ୍ତ୍ରୀ । ନାଦେ ଗଗନେ ଗମନ କରନ୍ତି ।୫।
କପର୍ଦ୍ଦୀ ଯାନମାନେ ହେଲେ ମତ୍ତ । କଲେ ଲୋଧ୍ରତରୁ କୁସୁମ ଜାତ ।
କୋରକିତ ହେଲେ ଅଗସ୍ତି ଦ୍ରୁମ । କଳାକର ଖଣ୍ଡ ପ୍ରାପ୍ତେ ସୁସମ ।
କୃପଣ ଲୋକ ଲୋକ ପରାପ୍ତେ । କଷ୍ଟ ପାଇଲେ ଚାତକ ପକ୍ଷୀଏ ।୬।
କମଳ ମୋଦକ କୁମାର ଦିଶେ । କୁନ୍ଦ ମୁକ୍ତ-ଯୁତ ରାଜରେ ଦିଶେ ।
କେତେ କହିବ ଶରଦ ବର୍ଣ୍ଣନା । କହିଲେ ଅନେକ ହୋଇବ ସିନା ।
କମଳ ନେତ୍ର ଦେଖିଲେ ଦିନେ । କୁମୁଦ ବନ୍ଧୁ ଉଦୟ ଗଗନେ ।୭।

କରିଅଛୁ ସବୁ ବଗ ଧବଳ । କମନୀୟ ବଣେ ମହୀମଣ୍ଡଳ ।
କର୍ପୂର ମୋଦ ବଢ଼ିଲା ପରଶ୍ୱେ । କି ଅବା ଷ୍ଠିତ ହେଲା କ୍ଷୀରମସ୍ୱେ ।
କାହାର ଯଶ ପ୍ରକାଶ ହୋଇ । କେତେ ଶୁକଳକୁ ଦେଲା ଲୁଚ୍ଛଇ ।୮।
କାଦମ୍ବ କୁଳେ ନୋହୁ ଦେଖାଦେଖି । କଲରବ କରି ହୁଅନ୍ତି ଦୁଃଖୀ ।
କୁନ୍ତର କୁଣ୍ଡ ନ ଥିଲା ପରଶ୍ୱେ । କରାଇ ଜନ ମନକୁ ଯଶସ୍ୱେ ।
କେ ବୋଲେ କାହା ହୃଦକୁ ଗୃହି । କୁବଳୟ ଫଳମାନ ତୋ କାହିଁ ।୯।
କେ କାହା ପାଣକୁ ଏଣ୍ଡୁ ସମସ୍ୱେ । କରନ୍ତି ଗଡ ଦେଶ କରି କାଯ୍ୱେ ।
କରାଇଲା ପ୍ରତିବମ୍ବ ବାରଣ । କରେ ବାରଣକୁ ଯେହ୍ନେ ଆରଣ ।
କାହାର ପୁର ସୁଧା ଲେପରୁ । କରାଇ କାହିଁ ସରତେ ଦୂରରୁ । ୦।
କେ କହୁବ ଚନ୍ଦ୍ର ରଜନୀ ଶୋଭା । କରେ ଯେ ଉଗ୍ର ମନମଥ ପ୍ରଭା ।
କୃଷ୍ଣ ଦେଖି ହେଲେ ତାହାର ବଶ । କଲେ ବିହାର କରିବାକୁ ଗ୍ରାସ ।
କମଳ ନେତ୍ର ସୁବେଶ ହୋଇ । କଦମ୍ବ ତଳେ ବଜେ କଲେ ଯାଇ ।୧୧

* * *

କରନ୍ତି ରାସ ଅତି ଅନୁରାଗେ । କର୍ଣ୍ଣ ପ୍ରିୟ ହୋଏ ଗ୍ରାମ ବିଭାଗେ ।
କଳକଣ୍ଠ କଣ୍ଠୀ ଗାବନ୍ତି ଗୀତ । କରେ ଅର୍ଥ ଅଭିନୟ ଉଦିତ ।
କରନ୍ତି ତାଳ ପାଦ ଘାତରେ । କେହ୍ନୁ ଉଣା ନୋହେ ଲୟ ଭେଦରେ
କମଳ ଦଳ ନେତ୍ର ତାଳମୟ । କୀଡ଼ା ହେତୁ ରାସରଙ୍ଗ ଉଦୟ ।
କଣ୍ଠେ ମୁକ୍ତାବଳୀ କୋକିଳ ରବ । କରେ କଙ୍କଣ ମୁଖ ଚନ୍ଦ୍ରବିମ୍ବ ।
କନ୍ଦର୍ପ ରୂପ ବସନ୍ତ ବାସ । କରେ ଦୀନକୃଷ୍ଣ ତାହାଙ୍କ ଆଶ ।୧୩।



( 'ରସ କଲ୍ଲୋଳ' ସପ୍ତଦଶ ଛାନ୍ଦରୁ ସଂଗୃହୀତ )

# ନାମ ନିତ୍ୟ—ନାମ ସତ୍ୟ

—ଭୂପତି ପଣ୍ଡିତ

ଶ୍ରୀହରେ କୃଷ୍ଣ ରାମନାମ । ସ୍ଥିର ଜଗତେ ଅନୁପମ ।
ଶ୍ରୀ ପୂର୍ଣ୍ଣବ୍ରହ୍ମ ନାମମହି । ନାମ ଶବଦ ରୂପେ ଥାଇ ।
ସେ ସତ୍ୟ ନିତ୍ୟ ନିରୂପମ । ଶବଦ ବ୍ରହ୍ମ ନିଜ ଧାମ ।
ଜୀବ ଅଜୀବ ଠୁଳ ଶୂନ୍ୟେ । ସର୍ବତ୍ର ସମାନ ସମ୍ପୂର୍ଣ୍ଣେ ।
ଦଶ ଦିଗରେ ସମବ୍ୟାପି । ଶବଦ ବ୍ରହ୍ମ ନାମ ରୂପି ।
ବର୍ଣ୍ଣରେ ନାମ ନ ମିଶଇ । ସବୁଛି ବର୍ଣ୍ଣ ନାମମଧ୍ୟି ।
ଯେସନେ ପିଣ୍ଡେ ବ୍ୟାପି ପ୍ରାଣ । କେବଳ ମୂଳ ନୋହେ ସ୍ଥାନ ।
ସର୍ବ ସମ୍ପୂର୍ଣ୍ଣ ନାମ ରହି । ସମୂଳ କରି ନୋହେ କହି ।
ସକଳ ରୂପ ନାମୁଁ ଜାତ । ନାମଟି ନିତ୍ୟ ସତ୍ୟ ତତ୍ତ୍ୱ ।
ଅବ୍ୟୟ ଅକ୍ଷୟ ଅଥୟ । ନାମଟି ଠୁଳ ଶୂନ୍ୟମୟ ।
ନାମରୁ ପ୍ରଣବ ସମ୍ଭୂତ । ପ୍ରଣବୁ ଚାରି ବେଦ ଜାତ ।
ତ୍ରିଗୁଣ ସେ ମାତା ରୂପ ଧରି । ଅଠର ପୁଣ ଜାତ କରି ।
ସ୍ରଜ୍ ଦୁହିତା କଲୁ ଜାତ । ଏ ରୂପେ ବଂଶ ଅପ୍ରମିତ ।
ସଚ୍ଚିଦାନନ୍ଦ ଭଗବାନ । ନାମ ପରମ ବ୍ରହ୍ମ ଜ୍ଞାନ ।
ମାତାଏ ବୋଇଲେ ଏ ସତ । ପୁଣଙ୍କ ବାକ୍ୟେ ସନମତ ।
ପ୍ରମାଣ ଦୁହିତାଙ୍କ ମତେ । ସେ ସତ୍ୟ ବଂଶାନୁ ଚରିତେ ।
ଏଣୁ ଯେ ଭଜେ କୃଷ୍ଣ ନାମ । ସର୍ବ ସମ୍ମତେ ଏ ଉତ୍ତମ ।



( 'ପ୍ରେମ ପଞ୍ଚାମୃତ' ପ୍ରଥମ ଅଧ୍ୟାୟରୁ ସଂଗୃହୀତ )

# ମାଳିନୀ

—ଉପେନ୍ଦ୍ର ଭଞ୍ଜ

ଏଥୁ ଅନନ୍ତରେ ରସ          ଶୁଣ ହେ ମାଳିନୀ ବେଶ
    ଶ୍ରୀଫଳ ପରି ଖୋସା, ଖୋସିଛୁ ଯୋଷା ଯେ । ୧ ।

ଗର୍ଭିକ କଳ ଚଉଁରୀ          ପ୍ରକାଶେ ରତ୍ନ ଭଉଁରୀ
    ଖଞ୍ଜିଅଛୁ ଚମ୍ପା । ଧଇର୍ଯ୍ୟ କମ୍ପା ଏ । ୨ ।

ଅନ୍ଧାର ନିଶାରେ ନଭେ          ନିର୍ମଳ ତାରା କି ଶୋଭେ
    ଦିଶଇ ତେମନ୍ତ ପରି । ଲୋଚନ କାରିଏ । ୩ ।

ଏଥକୁ କେଶ ନିଭଙ୍ଗେ          ଧରି ଦେଖାଇଛୁ ମାଙ୍ଗେ
    ଘନ ରାହୁ ଭୃଙ୍ଗ ଶ୍ରେଣୀ । ଅଛୁ ମୁଁ ଜାଣି ଏ । ୪ ।

ଲଲଟେ ଚନ୍ଦନ ଟିତା          ସିନ୍ଦୂର ବିନ୍ଦୁ ଶୋଭିତା
    ଚନ୍ଦ୍ର କୋଳେ କି ସବିତା । ଏହୁ ଭଣିତା ଏ । । ୫ ।

ଶ୍ରବଣେ ଘୃରୁ କୁଣ୍ଡଳ          ଦୋହଲେ ଖଣ୍ଡ ମଣ୍ଡଳ
    ସୁବର୍ଣ୍ଣ ପାଣି ଉପରେ । ଚିତ୍ତକୁ ହରେ ଏ । ୬ ।

ଫୁଲଗୁଣା ମାଠ ଗୁଣା          ଜରଇ ବିବେକ ବଣା
    ନାସା ପୁଟକେ ପୁଟକେ । ଥାଇ ଝଟକେ ଏ । ୭ ।

ଲକ୍ଷ୍ମି ବହ୍ନିନେ କଜ୍ଜଳ          ନୟନେ ଦିଶେ ଉଜ୍ଜ୍ୱଳ
    ପଦ୍ମେ କି ଭ୍ରମର ଖେଳା । ତେମନ୍ତ ଡୋଳାଏ । ୮ ।

କଣ୍ଠେ ସୁନାକଣ୍ଠୀ ମାଳୀ          ପ୍ରବାଳେ ହୋଇଛୁ ଝଲ
    ପଛକୁ ରୁଚିର ଫୁଲ । ମାନସ ଭୁଲ ଏ । ୯ ।

ଉଚ ଘଞ୍ଚ କୁଚ ବେନି          ହେଲ ଦିନୁ ଯଉବନୀ
    ଦେଖି ତ ନାହିଁ ଅଦନୀ । ଲୋଚନ ବେନି ଏ । ୧୦ ।

ମାରବାକୁ ଯୁବାକୁଳ　　　　କାମ କର ଅନୁକୂଳ
　　ଟେକନ୍ତୁ କି ଶାଢ଼ୀଘର । ତଥା ସୁନ୍ଦର ଏ । ୧୧ ।

ବଦମାଲୀ ପାଟବ୍ରତ　　　　ତାଡ଼ରେ ଭୁଜ ଧାପିତ
　　କମ ଆଦ ଖଡ଼ୁ ବାଣ୍ଠ । ହସ୍ତରେ ଶୋଭୁ ଏ । ୧୨ ।

ବାମ କରର ଅଙ୍ଗୁଳି　　　　ଝିସର ମୁଦରେ ଝଳି
　　ଚରଣ କି ବଳାପଟେ । ନାଦ ପ୍ରକଟେ ସ୍ତେ । ୧୩ ।

ପ୍ରପଦରେ କଂସା ମୁଦି　　　　ଶବଦେ ଧଇର୍ଯ୍ୟ ଖେଦ
　　ବେଢ଼ରେ ଅଳତା ଚନ୍ଦ । ଅତି ବଚନ୍ଦ ସ୍ତେ । ୧୪ ।

ବ୍ୟକ୍ତ ବିଷ୍ଣୁଣୀ ପଣନ୍ତ　　　　ଉରୁ ଉପରେ ଲମ୍ବିତ
　　ବନ୍ଧନ ଛନ୍ଦନ ନୀବୀ । ମୋହନ ଛବି ସ୍ତେ । ୧୫ ।

ସ୍ତନ ଉର୍ଦ୍ଧ୍ୱେ କଣ୍ଠତଳେ　　　　ମଣିବନ୍ଧେ କର ମୂଳେ
　　ପାଦରେ ଚବୁକରେ । କି ମନୋହର ସ୍ତେ । ୧୬ ।

ହରତାଳୀ କାଳୀ ଚିତା　　　　ଉକୁଟାଇଛୁ ବନିତା
　　ଦେହ ତ ଅତ୍ୟନ୍ତ ଗୋର । ତହିଁକି ତୋରସ୍ତେ । ୧୭ ।

ନୋହେ ଉଚ୍ଚ ଖର୍ବ ଅତି　　　　ଜଥାଏ ନୋହେ ଯୁବତୀ
　　ପୀନ ନୋହୁ କ୍ଷୀଣ ନୋହୁ । ଏମନ୍ତ ଦେଖି ସ୍ତେ । ୧୮ ।

ବିବର୍ଜିତ ଗଣ୍ଡିଶିର　　　　ପାଚିଲା ରସାଳ ପର
　　ବୟସ ଷୋଳ ସରେ । ଏଥି ଭିତର ସ୍ତେ । ୧୯ ।

କୁସୁମ ଗୁଙ୍ଗୁଡ଼ା କରେ　　　　ଗୋଡ଼ାଇଛନ୍ତି ଭ୍ରମରେ
　　ଗଜପରାସ୍ତେ ମନ୍ଥର । ଗମନ ତାର ସ୍ତେ । ୨୦ ।



(ଲାବଣ୍ୟବତୀ—୧୩ଶ ଛାନ୍ଦ)

# କହ ହନୁ ମୋର କାନ୍ତର କୁଶଳ

—ବିଶ୍ୱନାଥ ଖୁଣ୍ଟିଆ

କହ ହନୁ ମୋର କାନ୍ତର କୁଶଳ ଲକ୍ଷ୍ମଣର ସର୍ବ କୁଶଳ ।
ମରକତ ହେବ ବେନି କଳେବର ହୋଇ ନାହାନ୍ତି ନା ଦୁର୍ବଳ ।
ହନୁ ହେ ! ବେନି ଭାଇଙ୍କର କୁଶଳ ।
କୁଶଳ କରି ଲକ୍ଷ୍ମଣ ସେବା କରୁଥାନ୍ତି ଟିକି ପାଦ କମଳ । ୧ ।

ମୋର ବିଚ୍ଛେଦ ହୋଇଲା ଦିନୁ ତନୁ ଦୁର୍ବଳ ହୋଇଥିବ ପରା ।
ଅଧୈର୍ଯ୍ୟ ହୋଇଲେ ଲକ୍ଷ୍ମଣ ତାହାଙ୍କୁ କରାଉଥାନ୍ତି ଟିକି ଧୀର ।
ହନୁ ହେ, ମୋତେ ଏଥୁଁ କଷ୍ଟେ ନେବେ କି ।
ବାନର ଦଳ ଘେନି ସିନ୍ଧୁ ପାରି କି ହୋଇ ଏଥକୁ ଆସିବେ କି ।

ବୋଲଇ ସେ ହନୁ କାନ୍ଧରେ ବସାଇ ଶ୍ରୀରାମ ପାଶେ ଘେନିଯିବି ।
ସ୍ୱଇଚ୍ଛାରେ ମୁଁ କେମନ୍ତ ପ୍ରକାରେ ପୁରୁଷ ଅଙ୍ଗକୁ ଛୁଇଁବି ।
ହନୁ ହେ, ଚୋରାଇ ରାବଣ ଆଣିଲା ।
ତୁମ୍ଭେ ଚୋରାଇ ଘେନି ଗଲେ ପ୍ରଭୁଙ୍କ ଯଶ ଆଉ କାହୁଁ ରହିଲା ।

ବତ୍ରବ୍ୟା ନନ୍ଦନ ଆସିଣ ଏଠାକୁ କଣ୍ଠ ଯେ ବେନି ମାସକଲା ।
ବେନି ମାସେ ମୋତେ ଶ୍ରୀରାମ ଲକ୍ଷ୍ମଣ ଦେଖାଇବୁ ବୋଲି ବୋଇଲା ।
ହନୁ ହେ, ଏକମାସ ଥିବ ପ୍ରାଣ ହେ ।
ପ୍ରାଣ ଥାଉଁ ଥାଉଁ ଶ୍ରୀରାମ ଲକ୍ଷ୍ମଣ ଶୀଘ୍ର କରି ତୁମ୍ଭେ ଆଣ ହେ ।

କମ୍ପା ହନୁ ମୋର ପାଇଁ ରାମ ଦେଲେ କରପଲ୍ଲବରୁ ମୁଦ୍ରିକା ।
ଶୂନ୍ୟ ଯେ ଦିଶୁଥିବ ମୋ ପ୍ରଭୁଙ୍କର କର କମଳ ଅନାମିକା ।
ହନୁ ହେ, ଏ ମୁଦ୍ରିକା ନୁହେଁ ଅନ୍ତର ।
ପ୍ରଭୁଙ୍କ କରେ ଥାଇଣ ମୋର ତନୁ ଭ୍ରମୁ ଯେ ଥାଇ ନିରନ୍ତର ।

ମୃର୍ତ୍ତିକା ମସ୍ତକେ ଲଗାଇ ଆପଣା ପଣନ୍ତରେ ବାନ୍ଧ ରଖିଲେ ।
ମସ୍ତକୁଁ ମଣି ବାହାର କରି ପୁଣି ହନୁକରରେ ସମର୍ପିଲେ ।
ହନୁ ହେ, ମୋ ଠାରେ କରୁଣା କରିବେ ।
ଦୀନଜନଠାରେ କରୁଣା କଲେଟି କରୁଣାସିନ୍ଧୁ ବୋଲାଇବେ ।

କହିବ ହନୁ ହେ ଏତେକ ମାଣବକ ମୋହର ବନସ୍ଥ ଉଜନ୍ତି ।
କେବଳ ମୋହର କଲା ଅପରାଧ କ୍ଷମା କରିବେ ମୋର କାନ୍ତ ।
ହନୁ ହେ, ପ୍ରବୋଧ କରିଣ କହିଇ ।
ବୋଲେ ବଶି ରାମ ଛାମୁରେ ଜଣାଇ ନକଟେ ଆଣିବ ବୋଲଇ ।



(ସୁନ୍ଦରକାଣ୍ଡ—୭ମ ଓ ୯ମ ଛାନ୍ଦରୁ ସଂଗୃହୀତ)

# ସମର ବର୍ଣ୍ଣନା

—ବ୍ରଜନାଥ ବଡ଼ଜେନା

ଶୁଣି କହନ୍ତି ସେଷେ ନରସାଇଁ
ଏତେ କଥା କପାଁ କହ ଘୋଡ଼ାଇ ।
ସମସ୍ତେ କହୁଛ ପଳାଇ ଯିବା
କେହ ତ କହୁଲ ନାହିଁ ରହିବା ।
ମୁଁ ନ ଯିବ ଗୁଡ
ଭଲ କେମନ୍ତେ ମୋତେ ଦେବେ ଚଡ଼ ।୧।

ହତଆର ବାନ୍ଧଥିବା ଲୋକର
ମରିବାକୁ ଯେବେ ହୋଇବ ଡର ।
ହତଆର ଗୁଡ଼ ଛେତ କମାହ୍
ତେବେ କାହାକୁ କହିବା କ ଆଉ ।
ନ ଲଜ୍ଜିଜ ଖାଇବା
ଷତ୍ରିଙ୍କ ଶୋଭା ରଣେ ପ୍ରାଣ ଦେବା ।୨।

ଭୀମ ଅର୍ଜୁନ ଦ୍ରୋଣ କର୍ଣ୍ଣ ବୀର
କାହିଁ ଅଛନ୍ତି ସେହ ଶରୀର ।
ଯଶ ମାତ୍ରକ ଯାଇଅଛୁ ରହ
ନା—ମରଦକୁ କେ ଭୁଣ୍ଡେ ବଧାଇ ।
ଏହା ନ ଯେଜଲ
ଗଡ଼ ଗୁଡ଼ ଗୁଡ଼ ସମସ୍ତେ ବୋଲ ।୩।

କାହାର ପୃଥ୍ୱୀ କେ ସଙ୍ଗରେ ନେବ
ଯଶ ଅପଯଶ ଦୁଇ ରହିବ ।

ଯେତେ ରାଜା ଗଲେ ପୃଥ୍ୱୀ ନଯାଇ
ଦୁଇ କଥାରେ ନାମ ରହୁଥାଇ ।
        ଦାତା ଶୂର ପଣ
ଏ ବନେ ଆଉ ନାମ ନୋହେ କାଣ । ୪ ।

ଦେଖ ହୋଇଅଛୁ କେତେ ମହଜ
ଲଢ଼ି ରଖିଥାଇ ଏଡ଼େ ଫଉଜ ।
କମର ବାନ୍ଧି ଖାଇ ଧନ ରାଢ
ଏଥୁଁ କି ବଡ ବାସବ ସମ୍ପତ୍ତି ।
        ଛାଡ ଉଠେ ଫୁଲି
କେମନ୍ତେ ବୋଲ ଗଡ଼ ଗ୍ରୁଡ଼ ବୋଲି । ୫ ।

ଫଉଜ ଭିତରେ ଘୋଡ଼ା ପକାଇ
ମାରେ ଦଶହୁ ନଶଭସ୍ମ ହୋଇ ।
ସଣ୍ଡି ପର୍ଯ୍ୟନ୍ତେ ପଶି ଝାସିଯିବ
ଫେର ଅଇଲେ ତ ସକଳ ଲାଭ ।
        ନୋହୁଲେ ସେ ମଲେ
ବାସବ ସଙ୍ଗେ ସେ ବସିବ ଭଲେ । ୬ ।

ହାତ ଉଠାଇ ଯେ ମରବ ବୀର
ତାହାକୁ ମାଙ୍କ ସେହ୍ନ ପଞ୍ଚାନ୍ତର ।
ରଣେ ଯା ଅଙ୍ଗ ହୋଏ ଚେନା ଚେନା
ତାହାର ଜୀବନ ସୁଫଳ ସିନା ।
        ଯେ କାଯତ ହୋଏ
ପୁରୁଷ ହେଲେ ସେ ଯୁବତୀ ପ୍ରାୟେ । ୭ ।

ବୋଳି ଅଙ୍ଗରେ କର୍ପୂର ଚନ୍ଦନ
ମଣ୍ଡି ହୋଇଥିବ ହେମ ରତନ ।

ଘରେ ଥିବ ଶଚୀପତି ସମ୍ପତ୍ତି
ରଜତ ଦେଖି ଢୁଲୁକେ ଯା ଗ୍ରୀବ ।
ସେ ମନୁଷ୍ୟ ସ୍ୱାନ
ସ୍ୱେଗ ନୁହେଁ ସେ ତା ସେଗ ସମାନ । ୮ ।

କାହିଁକି କଷ୍ଟାବଳେ ଏଥି ଥିବା
ସ୍ଥଳ ଛାଲ ଖଣ୍ଡା ହୋଇ ମିଶିବା
ହ୍ୱଶବୋଲ ଝାସୁ ଯେ ହେବ ହେଇ
ଏତେ ଶଗ୍ନରରେ କି ଫଳ ଆଉ ।
ଏହି କଥା ମୂଳ
କେ ସମ୍ଭବ ବରଗୀଙ୍କ ଜଞ୍ଜାଳ । ୯ ।

ଲେଢ଼ର ଗୁଡ଼ କନ୍ଦୁଣୀକୁ ଗଲେ
କେମନ୍ତ ଘଟଣ ହୁଅଇ ଭଲେ ।
କର ଯାରେଣି ଗୁଣ ଗଲେ ଛୁଡ଼ି
ହାତକୁ ଆସଇ କି ଯେବେ ଲେଢ଼ି ।
ବରଗୀ କପଟ
ଜାଣି ନାହିଁ ତାଙ୍କ ହୃଦର ନାଟ । ୧୦ ।



( ସମର ତରଙ୍ଗ—୪ମ ଗ୍ରନ୍ଥରୁ ସଂଗୃହୀତ )

# ଶ୍ରୀକିଶୋରୀଙ୍କର ସଖୀ ପୁରତେ ଶ୍ରୀକୃଷ୍ଣ ଅନୁରାଗ କଥନ

—ଅଭିମନ୍ୟୁ ସାମନ୍ତସିଂହାର

ରାଧା ଧଣ ସଖୀ କର । ବୋଲନ୍ତି ଆକଟ ଆଉ ନକର ଗୋ ।
ଲାଜ ଭୟ ଗୁଡ଼ିଲ ନକର । ସଜନି ଗୋ । ୧ ।
ଘନଶ୍ୟାମ ଗୁଣମାନ । ରଖିଅଛୁ କି ମୋ ଧୈର୍ଯ୍ୟ ଗୁମାନ । ଗୋ ।
ମନ ଦହୁଛୁ ତା ସନମାନ । ସଜନି ଗୋ । ୨ ।
ତୁଚ୍ଛ ମୋହିବା ମୂନର୍ଣ୍ଣି । ତାଙ୍କ ପ୍ରୀତି ପ୍ରଣେ ଯୋଗ୍ୟ ମୁଁ ନଞ୍ଜି । ଗୋ ।
ଅଲଙ୍କାର ସେ ତ ଅବନୀକ । ସଜନି ଗୋ । ୩ ।
ଶୁଣି ତାଙ୍କ କଥା ପଦେ । ରମା ଉମା ପ୍ରାଣ ବିକବେ ପଦେ । ଗୋ ।
ଶଚୀ ନରସିବେ ଇନ୍ଦ୍ର ପଦେ ସଜନି ଗୋ । ୪ ।
ଅନାଇଁ ଯାହା ବଦନ । ପଞ୍ଚ ହେଲେ ହେବ ମୋହ ବଦନ । ଗୋ ।
ସୁଖାନନ୍ଦ ଅମୃତ ସଦନ । ସଜନି ଗୋ । ୫ ।
ଦେଖିଲେ ପଦ ବରଣ । ଦମ୍ଭ ତେଜି ଆଚରିବେ ପୀରତ । ଗୋ ।
ନାଗ ନାରୀ ଇଚ୍ଛିବେ ସୁରତ । ସଜନି ଗୋ । ୬ ।
ଗତ କରନ୍ତେ ପଥରେ । ଦ୍ରବହୋଇ ବହିସିବେ ପଥରେ । ଗୋ ।
ନ ଜ୍ୱଳିବ କେ ମନମଥରେ । ସଜନି ଗୋ । ୭ ।
କେବଳ ନେତ୍ର ପଥରେ । ପଡ଼ିଗଲା ବାଙ୍କ ଚୂଳିଆ ଥରେ । ଗୋ ।
ଆଜଯାଏ ମୋ ହୃଦସ୍ଥ ଅରେ । ସଜନି ଗୋ । ୮ ।
ଦମ୍ଭ ବଳିଲେ ପଡ଼ିକି । ଆଖି ରଖିବ କେ ବୁଦ୍ଧି ଗୁଡ଼ିକି । ଗୋ ।
ମୁଁ ତ ହାରିଲିନ ମାନବକ । ସଜନି ଗୋ । ୯ ।

ନାହିଁ ପୂର୍ବେ ପୁଣ୍ୟ କର । ସୁମନେ ମନାଇ ନାହିଁ ଶଙ୍କର । ଗୋ ।
ହେବ କି କରି ତାଙ୍କ କିଙ୍କର । ସଜନି ଗୋ । ୧୦ ।

ଯାହିଁ ମୁଖ ଦରପଣେ । ବିସ୍ମରଇ ହେଲେ ମୋପରି ପଣେ । ଗୋ ।
ଶୋଭା ନ ଦିଶିବେ ଦାସୀ ପଣେ । ସଜନି ଗୋ । ୧୧ ।

ମୁରଲୀ ମୁଖ ସୁନ୍ଦର । ତୋଳା ଖେଳାଇବା ଭଙ୍ଗୀ ସୁନ୍ଦର । ଗୋ ।
ଜାତ ସ୍ଥଳ ସେ ତ ଆନନ୍ଦର । ସଜନି ଗୋ । ୧୨ ।

ସ୍ମିତ ରଞ୍ଜିମା ଅଧରେ । ତ୍ରିଭଙ୍ଗୀ ଛନ୍ଦରେ ମୁରଲୀ ଧରେ । ଗୋ ।
ନାହିଁ ସେ ଶୋଭା ଅଧ ଉର୍ଦ୍ଧ୍ୱରେ । ସଜନି ଗୋ । ୧୩ ।

ଅଳକାବୃତ ଲପନ । ବେଳେ ବେଳେ କରଇ କମ୍ପନ । ଗୋ ।
ଦେଖି ନ ଦେଖିବ କେ ସ୍ୱପନ । ସଜନି ଗୋ । ୧୪ ।

ମକର କୁଣ୍ଡଳ ଗଣ୍ଡ । ଶ୍ରୁତିରେ ଅଗମ୍ୟ ଶ୍ରୁତି ସଙ୍ଗତ । ଗୋ ।
ଦେଖି ନେତ୍ର ପାଇଯାଏ ଗଣ୍ଡ । ସଜନି ଗୋ । ୧୫ ।

ଗୁଞ୍ଜ ଗୁଞ୍ଜରି ଖଞ୍ଜିତ । ଗୋଟା ମଲ୍ଲୀବେଢ଼ା ଚୂଡ଼ା ରଞ୍ଜିତ । ଗୋ ।
କେକୀପିଚ୍ଛ ତହିଁ ବିରାଜିତ । ସଜନି ଗୋ । ୧୬ ।

ଜାମ୍ବୁଡାଳ ଖୋଷିବାର । କଅଁ ପଞ୍ଝୀବେଢ଼ ତହିଁ ଦେବାର । ଗୋ ।
ଦନ୍ତ ନାଶନ ସେତ ଯୁବାର । ସଜନି ଗୋ । ୧୭ ।

ନାସେ ଗଜ ମୋତିବର । ଥୋପ ମେଲିଛି କି କାମ ଧୀବର । ଗୋ ।
ଭେଦକ ସେ ନେତ୍ର ଶଫରବର । ସଜନି ଗୋ । ୧୮ ।

ଭାଲେ ଚିତା ଗୋରଚନା । କସ୍ତୁରୀ ତିଳକ ମଧ୍ୟେ ରଚନା । ଗୋ ।
ବିନାଶକ ସେ ବାମ ଲୋଚନା । ସଜନି ଗୋ । ୧୯ ।

କଣ୍ଠେ କଉସ୍ତୁଭ ମଣି । ଜଳାଧରେ ଉଦେ କି ଦିନମଣି । ଗୋ ।
ରତ୍ନହାର ନବଗ୍ରହ ମଣି । ସଜନି ଗୋ । ୨୦ ।

ଶୋଭା ପୀତ ବସନରେ । ବିଜୁଳି ଶୋହେ କି ନବଘନରେ । ଗୋ ।
ଦେଖି ମାନ ନରହେ ମନରେ । ସଜନି ଗୋ । ୨୧ ।

କଟି ତଟରେ କିଙ୍କିଣୀ । କି ଜାତ ମଧୁର ଶୁଭେ ତା ଝଣି । ଗୋ ।
ଝଲତ୍କାରେ ମନ ନଏ କିଣି । ସଜନି ଗୋ । ୨୨ ।

ପଦେ ରଣିତ ନୂପୁର । ନାଦେ ଚମକାଇ ଅମରପୁର । ଗୋ ।
କାହ୍ନ ହୃଦ ନୋହେ ରସପୂର । ସଜନି ଗୋ ।
ନଟବର ମନୋହର । ଦେଖିଲେ ମୋହିତ ହୋଇବେ ହର । ଗୋ ।
ନାସ୍ତି ବାଞ୍ଛାହେବ ଅଦେହର । ସଜନି ଗୋ । ୨୪ ।
ଅଲକ୍ଷ ସହ୍ନନର । ଶୋଭି ନର ନାକ ନାଗ କିନ୍ନର । ଗୋ ।
ପୂଜା ପ୍ରତିମା କି ମଦନର । ସଜନି ଗୋ । ୨୫ ।
କି ସୁର ନର ତରୁଣୀ । ଦେବ ସ୍ତ୍ରିଷ୍ଟି ହେବେ ପୁରତେ ଋଣୀ । ଗୋ ।
ଶୋଭି ଦେଖି ରସିବେ ବାରୁଣୀ । ସଜନି ଗୋ । ୨୬ ।

ଯେ ଶୋଭି ସ୍ତୁଷ୍ଟି ସାମନ୍ତ । ଅଛଇ ତନ୍ଦ୍ରିରେ ଗୁଣ୍ଡ ତେମନ୍ତ । ଗୋ ।
ଯେନ ପ୍ରୀତିପ୍ରା-ପଣ କେମନ୍ତ । ସଜନି ଗୋ । ୨୭ ।

ମୋତେ ଲଭିବା ହେତୁରେ । ଅନୁସାରଥାନ୍ତି କେତେ ମନ୍ତ୍ରରେ । ଗୋ ।
ବଶ ନୋହିବେ ନେ ତେମନ୍ତରେ । ସଜନି ଗୋ । ୨୮ ।

ମୋ ଗତାଗତ ବାଟରେ । ଜଗି ବସିଥାନ୍ତି ସେ କପଟରେ । ଗୋ ।
ମାତ୍ର ଦରଶନ ଲମ୍ପଟରେ । ସଜନି ଗୋ । ୨୯ ।

ଲେଖନ୍ତି ଗନ୍ଧ ପଥରେ । ପ୍ରାଣବନ୍ଧ୍ୱାସରେ ମନମଥରେ । ଗୋ ।
ତବୁ ମାର ମୋର ବୋଲ ଥରେ । ସଜନି ଗୋ । ୩୦ ।

ମୋ ପାଦଚିହ୍ନ ଧୂଳିକି । ବୋଲି ଦିଅନ୍ତି ସେ ହୃଦସ୍ଥଳୀକି । ଗୋ ।
ଲୁଚି ଯାଇ ସେ ପ୍ରେମାବଳୀକି । ସଜନି ଗୋ । ୩୧ ।

କୁସୁମ ତୋଳା ବନରେ । ଲେଖନ୍ତି କେତକୀ ସୁ-ଛଦନରେ । ଗୋ ।
ମଧୁପକୁ ମାଧବୀକା । ଯେମନ୍ତ ତେମନ୍ତ ତୁ ମୋ ଜୀବିକା । ଗୋ ।
ଦୁଇଛାରେ ମୁଁ ହୋଇଛି ବିକା । ସଜନି ଗୋ । ୩୩ ।

ଏହା ପଢ଼ିଲା ବଦନରୁ । ପାଶୋର ନଗଲା ଦଣ୍ଡେ ମନରୁ । ଗୋ ।
ସେ ତ ଅଧିକ ମୋ ଜୀବନରୁ । ସଜନି ଗୋ । ୩୪ ।

କହନ୍ତ ମିତ ଆଗରେ । ଝାସ ଦେବ ଯାଇ ଗଙ୍ଗା ସାଗରେ । ଗୋ ।
ଛଳ ହେବ ବନ୍ଧୁ ଶ୍ରୀ ଅଙ୍ଗରେ । ସଜନି ଗୋ । ୩୫ ।

ତା ନାମ ଗାଇ ତୁଣ୍ଡରେ । ପ୍ରୀତ ଡମ୍ବରୁ ବଜାଇ ଦାଣ୍ଡରେ । ଗୋ ।
ଭିକ୍ଷା ମାଗୁଥିବ ବ୍ରହ୍ମାଣ୍ଡରେ । ସଜନି ଗୋ । ୩୬ ।

ତା ନାମ ଲେଖା ଗ୍ରୁପରେ । ଗ୍ରୁଇ ହୋଇଥିବ ହୃଦ ଉପରେ । ଗୋ ।
ଧାସ୍ତିଥିବ ତାହା ସ୍ୱରୂପରେ । ସଜନି ଗୋ । ୩୭ ।

କେହୁ ଯାଇ ସନ୍ନିଧିରେ । ଜଣାଇବ ଯେବେ କୃପାନିଧିରେ । ଗୋ ।
ଦୟା ହୋଇବ ନାହିଁ କି ଧୀରେ । ସଜନି ଗୋ । ୩୮ ।

ଏହା ଯେବେ ଶୁଣାଯିବ । ପଥର ହେଲେ ତ ତରଳି ଯିବ । ଗୋ ।
ପତିବ୍ରତା କେବା ନ ତେଜିବ । ସଜନି ଗୋ । ୩୯ ।

ଭୃଙ୍ଗ ବେଗ ଚନ୍ଦ୍ରମଲ୍ଲୀ । ଦେଖି ଦେଖାନ୍ତ ଠାର ଦେଇ ମଲି । ଗୋ ।
ଏହା ଦେଖି କାହିଁକି ନ ମଲି । ସଜନି ଗୋ । ୪୦ ।

ରଜନୀ ତୋଷି ଧନରେ । ବୋଲୁଥାନ୍ତ କେଡ଼େ ସନମାନରେ । ଗୋ ।
ମୋ ବଦନ ଅଙ୍ଗ ମିଳନରେ । ସଜନି ଗୋ । ୪୧ ।

ମୋ ସ୍ନାନ ଜଳ ଘାଟରେ । ବସିଲି ବୋଲି ପ୍ଲବନ୍ତ ହଟରେ । ଗୋ ।
ଛଡ଼ା କୁଙ୍କୁମ ଲବ୍ଧ ଲଟରେ । ସଜନି ଗୋ । ୪୨ ।

ଛଡ଼ା ମାଳକୁ ଲେଡ଼ାଇ । କି ସ୍ନେହ ନେଇ ଚୂଡ଼ାରେ ଗୁଡ଼ାଇ । ଗୋ ।
ହେଲି ଇନ୍ଦ୍ର କରନ୍ତ ଜଡ଼ାଇ । ସଜନି ଗୋ । ୪୩ ।

ଚୂତ ପଲ୍ଲବ ପତର । ହୃଦୟରେ ଲଦନ୍ତ ହୋଇ କାତର । ଗୋ ।
ବାସ ପଣଧାନ ହସ୍ତତର । ସଜନି ଗୋ । ୪୪ ।

ସେବତୀ ଶତା ଖଳରେ । ବର୍ଷନ୍ତ ପକ୍ଷୀ ଧରନ୍ତ ଜାଲରେ । ଗୋ ।
ନେଇଣ ସ୍ଥଳତ ଗଣ୍ଡ ଫୁଲରେ । ସଜନି ଗୋ । ୪୫ ।

କଣଳପୁ ଭୃଙ୍ଗ କରେ । ଆଦରେ ଖୋସନ୍ତ ସେ ମସ୍ତକରେ । ଗୋ ।
କର ନବେଶନ୍ତ କର କରେ । ସଜନି ଗୋ । ୪୬ ।

ଧର ଅଳି ନଳିନରେ । ମିଳାନ୍ତ ପୁଣି କ ଘେନି ମନରେ । ଗୋ ।
ସୁଖୀ ଦେଖି ଖେଳା ଖଞ୍ଜନରେ । ସଜନି ଗୋ । ୪୭ ।

ଶୁଣି ପିକ-ସ୍ୱରତାନ । ଧୀରେ ନବେନ୍ଦ୍ର ଦକ୍ଷ ହୃଡ଼କ । ଗୋ ।
କେତେ ପ୍ରଶଂସା ହଂସ ଗଢକ । ସଜନି ଗୋ । ୪୮ ।

ଦେଖିଲେ ନବ ତମାଳ । ଝଟ୍ଟି ଦେଉଥାନ୍ତି କୁସୁମ ମାଳ । ଗୋ ।
କରୁଥାନ୍ତ କୋଳ କୃତ ମାଳ । ସଜନି ଗୋ । ୪୯ ।

ସ୍ୱହୁଁ ପଦ୍ମ ବଂଶୀଧର । ଗୋଳ ହୋଇ ଯାଉଥାଇ ଅଧର । ଗୋ ।
ନେଣ ହୋଇଯାଇ ଜଳଧର । ସଜନି ଗୋ । ୫୦ ।

ଏ ଜାତ ମମତାମାନ । କରୁଛ ଏହା କେ କ ଅନୁମାନ । ଗୋ ।
ମୁଁ ଦେଳୁଛୁ ଏ ସନମାନ । ସଜନି ଗୋ । ୫୧ ।

ଦେଖି ଶୁଣି ଜାଣି କର । କାହିଁ ଗୁଆଁ ସ୍ୱ ତେଜିବ କ କର । ଗୋ ।
ମାନସ ତ ଅବାରଣ କଣ୍ଠ । ସଜନି ଗୋ । ୫୨ ।

ଧରୁଛ ତ୍ରୁମ୍ବର କର । ସଖି ଗଣ-ଗୁଣ ଏତେକ କର । ଗୋ ।
ନେଇ କରଅ ତା ପଣକର । ସଜନି ଗୋ । ୫୩ ।

ସେ ଯେତେ ଷାଠ ରଚଇ । ହୃଦ ଭିତରେ ତ ମୋର ନାଚଇ । ଗୋ ।
ତାହା ବିନା କ ରାଧା ବଞ୍ଚଇ । ସଜନି ଗୋ । ୫୪ ।

ବାଳୁ ଦୂଷଣ ଘୋଷଣ । ହେଲେ ହେବ ପଛେ ନାନା କଷଣ । ଗୋ ।
ମୁଁ ତ କଳଙ୍କ ନନ୍ଦା ଭୂଷଣ । ସଜନି ଗୋ । ୫୫ ।

ଭସ୍ମକୁ ତେଜ ବହନ । ବେଗେ ଦେଖାଅ ସେ କାମମୋହନ । ଗୋ ।
ହେଲା କଲେ ହେଲିଟି ଦହନ । ସଜନି ଗୋ । ୫୬ ।

ଶୁଣି କେଶୋଷ୍ଣ ଗ୍ରସ୍ତ । ସଖୀ ସମ୍ବନ୍ଧ ହୋଇଲେ ଆରତ । ଗୋ ।
ହୃଦ ଭିତର ହେଲ୍ଲ କରତ । ସଜନ ଗୋ । ୫୭ ।

ଧୀନ ଅଭିମନ୍ୟୁ ଜୀବ । ସ୍ୱଧାଶ୍ରବ ଶ୍ରବ ବାନ୍ଧାଗଯିବ । ଗୋ ।
ଏ ଭାଗ୍ୟ କି ସତେ ଦେଖାଯିବ । ସଜନ ଗୋ । ୫୮ ।



( ତ୍ରିପଦର୍ଧ ଚନ୍ଦ୍ରାମଣି—ଅଷ୍ଟ ଚତ୍ୱାରିଂଶ ଛନ୍ଦ )

# ଅକ୍ରୂର ସହିତ ରାମକୃଷ୍ଣଙ୍କ ରଥରେ ଯାତ୍ରା

—ଭକ୍ତଚରଣ ଦାସ

ଏଥୁ ଅନନ୍ତରେ ଶୁଣ ବିଚିତ୍ର ଚରିତ
ରାମକୃଷ୍ଣ ସଙ୍ଗେ ଯେଣ ସଫଳାର ସୁତ । ୧ ।

ବାହୁଲ ଅପୂର୍ବ କରି ଗୋପ ଦାଣ୍ଡେ ରଥ
କି ଅବା ମାତଳି ସଙ୍ଗେ ବିଜେ ଶଚୀନାଥ । ୨ ।

ମଦନ ବିଜୟୁ କିଏ ଶମ୍ବର ସମରେ ?
ଚନ୍ଦ୍ର କି ଗମନ କରି ଯାଉଛୁ ଅମ୍ବରେ । ୩ ।

ଶବଦ କରନ୍ତି ବାଦ୍ୟ ରଥାଙ୍ଗ ସମୂହ
ଶିଙ୍ଗା ବେଣୁବାଡେ ଶୁଭୁଅଛୁ ଗହଗହ । ୪ ।

ଗୋପସିନ୍ଧୁ ମଧ୍ୟେ କିଏ ସୁବର୍ଣ୍ଣ ବୋଇତ ?
ଭାସି ଆସୁଛୁ ବୋଇତ—କାର ନନ୍ଦ ସୁତ । ୫ ।

କି ଅବା ଗୁଣ୍ଡିଚ୍ଚା ବିଜେ କଲେ ଜଗନ୍ନାଥ ?
ନ୍ୟଗ୍ରୋଧ ମଣ୍ଡନେ କିବା ହୋଇଲେ ଆଗତ ? । ୬ ।

ଶିଙ୍ଗା ବେଣୁ ପତର କାହାଳୀ ଭୂରି ବାଜେ
ମଥୁରା ଯିବାକୁ ବ୍ରଜସିଂହ ରଙ୍ଗେ ସାଜେ । ୭ ।

ଅକ୍ରୂର ବାହାଇ ଅଶ୍ୱକୁ ହାଙ୍କୋଳି
ଚଳକାଲେ ଗୋପର ସୀମାନ୍ତ ଗଲା ବଳି । ୮ ।

କୃଷ୍ଣ ମୁଖ ଚାହିଁଣ କହଇ କଂସଭୃତ୍ୟ
ଯମୁନାରେ ସ୍ନାହାନ କରିବ ଆଜ୍ଞା କର । ୯ ।

ଶୁଣି ଗୋବିନ୍ଦ ବୋଲନ୍ତି କରି ଅବଗାହ
ବିଳମ୍ବ ନ କରି ଆସି ରଥବର ବାହ । ୧୦ ।

ଶୁଣି-ଶମନ-ବହିଣୀ-ତଟେ ମନ୍ଦମତି
ଦଣ୍ଡବତ କରି ହୃଦେ ଚିନ୍ତି ଚକ୍ରପାଣି । ୧୧ ।

ଆନନ୍ଦ ହୋଇଣ ଜଳେ କରେ ଅବଗାହ
ଦେଖିଲା ଅପୂର୍ବ କଥା, କମ୍ପଇ ବିଗ୍ରହ । ୧୨ ।

ଦିବ୍ୟ ଭୁବନେ ବିଜୟେ ବରଜ ସୁନ୍ଦର
ନବୀନ-ନୀରଦ-ତନୁ ଅତି ମନୋହର । ୧୩ ।

ଅନ୍ତର ସେ ରୂପ ଦେଖି କରଇ ବିସ୍ମର
କଂସ ଡରେ ଲୋଇ କି ଥଇଲେ ଶ୍ରୀଧର । ୧୪ ।

ଜଳେ ଆସି ଲୁଚିଅଛୁ କି ବୁଦ୍ଧି କରିବ
ବାହୁଡ଼ି ଗଲେ କଂସକୁ କି ବୋଲି କହିବ । ୧୫ ।

ଏମନ୍ତ ବିସ୍ମର ଜଳୁ ଉଠି ଦେଲା ଦୃଷ୍ଟି
ଦେଖିଲା ତଟରେ ବିଜେ ରାମ ଶ୍ରୀବିଗ୍ରହ । ୧୬ ।

ଚକିତ ଚିତ୍ତରେ ପୁଣି ଭାଳଇ ମନରେ
କି ଦେଖିଲି ବାତୁଳ କେ କଲା କି କି ମୋରେ । ୧୭ ।

ଯାହାକୁ ଦେଖିଲି ଜଳେ ସେ ତ ଅଛି କୂଳେ
ଦେଖି ପରୀକ୍ଷା କରଇ କନା ଆଉ ବେଳେ । ୧୮ ।

ଏତେ ବୋଲି ବୁଡ଼ିଲା ସେ ଯମଳା ତନୁଜ
ଦେଖିଲା ବିଚିତ୍ର-ପୁର କୋଟି ସୂର୍ଯ୍ୟ ତେଜ । ୧୯ ।

ମଧ୍ୟରେ ବିଜୟେ କରିଛନ୍ତି ଦେବରାଜେ
ଶିରେ ସପ୍ତ ଶାଖା ହେମ ମୁକୁଟ ବିରାଜେ । ୨୦ ।

ବାଳ ଭୃଙ୍ଗ-ପନ୍ତି ପ୍ରାଏ ଦିଶଇ ଅଳକା
ମୁଖ ପଦ୍ମ ବେଢ଼ି କି ଚୁମ୍ବନ୍ତି ମଧୁ ଚାଖା । ୨୧ ।

ସୁନ୍ଦର ଦିଶଇ ନୀଳ ଇନ୍ଦୀବର ପ୍ରଭ
ନାସାରେ ମୁକୁତା କି ସେ ଚନ୍ଦ୍ର ପାଶେ ତାର । ୨୨ ।

ଶ୍ରୁତିମୂଳେ ମକର କୁଣ୍ଡଳ ଝଳେ ରବ
ଜବା କୁସୁମକୁ ନିନ୍ଦେ ବିମ୍ବାଧର ଛବ । ୨୩ ।

କମ୍ବୁ କଣ୍ଠେ ମୋତି ଦାମ ଦିଶଇ ମଞ୍ଜୁଳ
ନୀଳ ଜୀମୂତ ଅଙ୍କରେ କବା ବକମାଳ । ୨୪ ।

କରିକର ଜିଣି ଚ୍ୟାର ଭୁଜ ଦଣ୍ଡ ସାଜେ
ଶଙ୍ଖ ଚକ୍ର ଗଦା ପଦ୍ମ କରତେ ବିରାଜେ । ୨୫ ।

କଟୀରେ ଶୋଭଇ ପୀତ ସୁକ୍ଷ୍ମ ଅମ୍ବର
କଳା ମେଘ କୋଳେ କିଏ ଛକତ ଅର୍ଜିର । ୨୬ ।

ଚରଣ ଯୁଗଳେ ଶୋଭା ବାଜେଣୀ ନୂପୁର
ଅଷ୍ଟନିଧି ଯେଉଁ ପଦ୍ମପାଦେ ପରସ୍ପର । ୨୭ ।

ଚଉପାଶେ ବାଳାସିନୀ କରନ୍ତି ଗାୟନ
କନ୍ଧରେ ବଜାନ୍ତି ବୀଣା ଦେଇ ତାଳ ମାନ । ୨୮ ।

ଲକ୍ଷ୍ମୀ ଆଦି ସରସ୍ୱତୀ କରନ୍ତି ମଙ୍ଗଳ
ନାରଦ ସନ୍ଧିତେଛନ୍ତି ଅନେକ ଅମର । ୨୯ ।

ସ୍ତୁତି ପଢ଼ୁଛନ୍ତି ଚଉମୁଖ ବେଦବର,
ଅନନ୍ତ ମସ୍ତକେ ଛତ୍ର କରନ୍ତି ବିହାର । ୩୦ ।

ଏମନ୍ତ ସ୍ୱରୂପ ଦେଖି ଆନନ୍ଦ ଅକ୍ରୂର
ଅନନ୍ତ ମସ୍ତକେ ଛତ୍ର କରନ୍ତି ବିହାର । ୩୧ ।

ଆନନ୍ଦ ମନରେ ବହୁ ମତେ କଲା ସ୍ତୁତି
କହଇ ଭକତ ଦାସ ସବେ ଭକ୍ତ ମତି । ୩୨ ।

●

( ମଥୁରା ମଙ୍ଗଳ—ଦଶମ ସ୍କନ୍ଧରୁ ସଂଗୃହୀତ )

# ଶ୍ୟାମ ନାଗର ହେ, ଏ ବେଶ ହୋଇବ ନାହିଁ

—ବନମାଳୀ ଦାସ

ଶ୍ୟାମ ନାଗର ହେ, ଏ ବେଶ ହୋଇବ ନାହିଁ
ଏ ବେଶ ହୋଇଲେ ପାଷାଣ ତରଳେ ଯୁବତୀ ବଞ୍ଚିବେ କାହିଁ । ଘୋଷା ।

ଉଭା ହୋଇଥିବ କଦମ୍ବର ମୂଳେ ନଟବର ବେଶ ହୋଇ
ଘେନିଥିବ ଯେବେ ମୋହନ ମୁରଲୀ ଅଧରେ ଚୁମ୍ବିବ ନାହିଁ । ୧ ।

ପିନ୍ଧିଥିବ ଯେବେ ପୀତାମ୍ବର ଲମ୍ବେ ଭୂମିରେ ଲୋଟିବ ନାହିଁ,
ହସୁଥିବ ଯେବେ ମୃଦୁ ମୃଦୁ ହୋଇ ତେରଛେ ନଦେବ ଚାହିଁ । ୨ ।

ଘେନିଥିବ ଯେବେ ଚନ୍ଦନର ବିନ୍ଦୁ ଗୋରୋଚନା ଥିବ ନାହିଁ,
ବାନ୍ଧିଥିବ ଯେବେ ତ୍ରିଭଙ୍ଗିମ ଚୂଳ ଚନ୍ଦ୍ରିକା ଖୋଷିବ ନାହିଁ । ୩ ।

ଯେତେ ବେଶ ତୋତେ ମନା କଲି ଶ୍ୟାମ ତେତେ ବେଶ ହେଲୁ ତୁହ୍ମ ।
ବୋଲେ ବନମାଳୀ ଶୁଣ ଗୋ ରାଧିକେ । ଏ ବେଶ ତୁମ୍ଭର ପାଇଁ । ୪ ।



(ବନମାଳୀ ପଦାବଳୀରୁ ସଂଗୃହୀତ)

# ଜାଣିଛି ମୁଁ ଏତେ ମାତ୍ର ଗୋ ଲଳିତେ

—କବିସୂର୍ଯ୍ୟ ବଳଦେବ ରଥ

ଜାଣିଛୁ ମୁଁ ଏତେ ମାତ୍ର ଗୋ ଲଳିତେ ଯାହା ଇଚ୍ଛା ତୋର ତାହା କର,
ଜ୍ୱଳନରୁ ବଳି ଯେବନୁ କେଳି କରେ ବିଭବଶ ନାହାକର । ପଦ ।

ଜିଣ କେତେ ବ୍ରଜ ଶିଶୁଥିଲେ ନିଜ, ପୁରୁଁ ଆସୁଥିଲ ଖେଳାଇ ସମଜ,
ଜମ୍ଭାରିଉମଣି ଗବାନ୍ଦ୍ରକୁ ଜିଣିବାର ପୁରେ ହେଲ ମୋ ନଜର । ୧ ।

ଜାଠ କୁରୁବନ୍ଦ ବାତାୟନ ବୃନ୍ଦ, ଅନାଇ ମୁଁ ଗୃହୁଥିଲ ମନ୍ଦମନ୍ଦ
ଜଙ୍ଗମ ହେବାର ଜମ୍ବୁନଦସାର ଶିଖି ଷ୍ଟୁରିଲ ସେ କି ପ୍ରକାର । ୨ ।

ଜୀବନଦ ନୀଳ ଜଳଜ ଯୁଗଳ ବଧୂବିମ୍ବେ ହୋଇ ବିଳାସ ବଢେଲ,
ଜାଠ କଲ ଚର ଜର ଜର ଶର—ନିକର ବରଷା ଖରତର । ୩ ।

ଜହ୍ନରକୁ ଗୋଲ ଦେଲପଣ ଗିଳି, ମୋହର ଦେହର ପୀଡ଼ାଗଲ ବଳି,
ଜୀବନାଶା ଚଳି ଯାଉଅଛୁ କଳି ପାରୁ ନାହିଁ ମୁଁ ମୋ ହୃଦନ୍ତର । ୪ ।

ଜନ ମନୋହାରୀ ସେ ବିଚିତ୍ର ଶିଖି, ଜାହା ନେତ୍ରପାତେ ଯାଇନାହିଁ ପୂର
ଜଗଦେବ ହରଚନ୍ଦନ ମୋହର ନାମ କହୁଅଛୁ ନିରନ୍ତର । ୫ ।



(କିଶୋର ଚନ୍ଦ୍ରାନନ୍ଦ ଚମ୍ପୂରୁ ସଂଗୃହୀତ)

# ଉଠିଲୁ ଏଡ଼େ ବେଗି କାହ୍ନୁଁ କି ରେ

—ଗୋପାଳକୃଷ୍ଣ ପଟ୍ଟନାୟକ

ଉଠିଲୁ ଏଡ଼େ ବେଗି          କାହ୍ନୁକିରେ, ଦୁଃଖିଧନ
ଦଧି ମନ୍ଥାଇ ଦେବୁ ନାହିଁ କି ରେ ।
ଦେହ ପାଶୋର ଦଣ୍ଡେ          ନିଦ ନଗଲୁ ଘଣ୍ଟେ
ବିଚ୍ଛୋଳ ହେଲୁ ମୋର ପାଇଁକି ରେ । ୧ ।
ଖେଳିବୁ ରାମ ଭୁଲେ          ପଛେ ପାଠ ପାଇଲେ
ଶୁଆଇ ଦେବ ଗୀତ ଗାଇ କି ରେ । ୨ ।
ମନ୍ଥିବ ମୁଁ କେମନ୍ତ          ଖୁଆ ଦଣ୍ଡରୁ ହାତ
ଛାଡ଼, ଦେଉଛୁ ଘର ଖୋଇକି ରେ । ୩ ।
ଆହା ଏ କି ପ୍ରମାଦ          ଛାଡ ନା ବାବୁ ପାଦ
ଡାକ ଯା ବଳରାମ ଭାଇକି ରେ । ୪ ।
ମଥନ ଘଟେ ହାତ          ପୂରାଇ ନବନୀତ
କାଢ଼ୁ ବୋଲନ୍ତ ହେଲୁ ବାଇକି ରେ । ୫ ।
ଚୁଲ୍ଲୁରେ ହାତଟା ଖାଇ          ନାଚୁଛୁ କାହ୍ନୁପାଇଁ
ଶୁଝିପିବୁ ନ ରାହ୍ନାଁ ଛୁଇକି ରେ । ୬ ।
ଦୁଷ୍ଟ କୃତ୍ୟ ପକାଇ          ଦସିଥିବ ଏକାଇ
ନଶିଦନ ତୋତେ କାଖୋଇକି ରେ । ୭ ।
ପଣତରେ ବଦନ          ପୋଛି ଦେଲେ ଚୁମ୍ବନ
ଗୋପାଳକୃଷ୍ଣ ଚନ୍ଦ୍ରେ ଦୁହିଁଙ୍କି ରେ । ୮ ।



( ଗୋପାଳକୃଷ୍ଣ ପଦ୍ୟାବଳୀରୁ ସଂଗୃହୀତ )

# ତତ୍ତ୍ୱଭେଦ ଚଉତିଶା

—ଭୀମ ଭୋଇ

କର୍ମଦେବ ଯାକୁ କହି ।
କପାଳ ଦୁଆରେ ଅଛଇ ରହି ।
କରତା ପୁରୁଷ ସେହି ।
ମନ ନାମ ଭଜ
ଏ ସଜରୁ ନାହିଁ ସଜ । ୧ ।

କ୍ଷିତିରେ କର ଭଜନ ।
କ୍ଷମା ସାଗରଙ୍କ ହୃଦରେ ଚିହ୍ନ ।
କ୍ଷୀର ସିନ୍ଧୁବାସୀ ଜାଣ । ୨ ।

ଗୁରୁଦେବଛନ୍ତି ପାଶେ
ଗର୍ଭ ଭିତରରୁ ସ୍ୱହାଁ ତୁ ଆପେ
ଜ୍ଞାନ ଲଭିବୁ ସାକ୍ଷାତେ । ୩ ।

ଘାର୍ଣ୍ଣି ପ୍ରକୃତି ହୃଦସ୍ଥ ।
ଘୋଟି ରହିଅଛୁ ମାୟା ବିଷସ୍ଥ ।
ଘୋର ବନ ଅଟେ ଦେହି । ୪ ।

ଅନନ୍ତାହ୍ୱସନ୍ତ୍ୱାହ୍ୱ ଙ
ଓଁକାର ଅକ୍ଷର କଣ୍ଠେ ଅଛଇ
ଅଣ ଆକାର ତା ଦେହି । ୫ ।

ଚିହ୍ନିଲୁ ନାହିଁ କାହିଁକି ।
କର୍ମ ନସ୍ତ୍ରନରେ ସ୍ୱହା କରେଷି ।
ଚନ୍ଦ୍ର ସୂର୍ଯ୍ୟଛନ୍ତି ସାକ୍ଷୀ । ୬ ।

ଛନ୍ଦ ନିର୍ମାଣ କରିଛୁ ।
ଛଡ଼ଙ୍ଗ ତୋର ଦେହରେ ଅଛୁ ।
ଛଡ଼ ବେଦ ବୋଲାଇଛୁ । ୭ ।

ଜଗତ ନାଥଙ୍କୁ ଭଜ ।
ଯୁବା ଦେହେଁ ତୋର ପ୍ରକୃତ ତେଜ ।
ଜ୍ୟୋତରୂପ ଦେବରାଜ । ୮ ।

ଝଂଟକ ବଜ୍ରକୁଳ ଚାପ ।
ଝଲ ଦଶୁଅଛୁ ଦେହରେ ଦେଖ ।
ଝାଉଁ ଝାଉଁ ବ୍ରହ୍ମରୂପ । ୯ ।

ନିଷ୍ଠା କରିଅଛୁ ବୁଦ୍ଧି ।
ନାମ ବ୍ରହ୍ମ ବୋଲି ଯାହାକୁ କହ୍ନି ।
ନିର୍ବିକାର ତାକୁ କହି । ୧୦ ।

ଟାଣ କରିଅଛୁ ତାକୁ ।
ଟିଆକଣ୍ଠ କରିଅଛୁ ଯାହାକୁ ।
ଟେକ ଧରିଛୁ ପିଣ୍ଡକୁ । ୧୧ ।

ଠିକଣାରେ ଧରି ବୁଦ୍ଧି ।
ଠୂଳ ଶୂନ୍ୟ ରୂପ ତାକୁ ଅଟଇ ।
ଠିକେ କହେ ଭୀମ ଭୋଇ । ୧୨ ।

* * *

ଡରୁ ରୁ ଅଛୁ ଭସ୍ମରେ ।
ଡଙ୍ଗର ଜନଙ୍କୁ ଦେଖି ବାହ୍ୟରେ ।
ଡେଇଁ ପଡ଼ୁଛୁ ମାୟାରେ । ୧୩ ।

ଡମାଳରେ ଅଛୁ ମାତି ।
ଢାଉ ଢାଉ ତୋର ଦେହରେ ଜ୍ୟୋତି ।
ଢମ ନଗର ତୋ ଜାତି । ୧୪ ।

ଅରୂପ ଅଣାକାର ।
ଆଣି ଠାବକର ଦେହରେ ତାର ।
ଅନାହତ ଧ୍ୱନି ଘର । ୧୫ ।

ତଣ୍ଡାକୁ କର ଗଣ୍ଠି ।
ତତ୍ତ୍ୱପଦ ବୋଲି ଯାହା କହନ୍ତି ।
ତାକ ତରକ ବୁଝନ୍ତି । ୧୬ ।

ଥୋଇଛୁ ଧନ ଭଣ୍ଡାର ।
ସ୍ଥାନକୁ ଆବୋରି ଜାଗତେ ଧର ।
ସ୍ଥିତ ଅଟେ ତୋ ଶରୀର । ୧୭ ।

ଦରଶନ କଲ୍ ନାହିଁ ।
ଦେବତା ବୋଲିଣ ଯାହାକୁ କହି ।
ଦେହରେ ପୂରିଛୁ ସେହି । ୧୮ ।

ଧର୍ମ ଲାଗିଅଛୁ ସଙ୍ଗ ।
ଧ୍ୟାନ ଧାରଣାରେ ରଖନ୍ତୁ ଅଙ୍ଗ ।
ଧରିଥାଅ ନାବ ମଙ୍ଗ । ୧୯ ।

ନାଡ ପ୍ରତି ଭାବ କଲ ।
ନବଘନ ରୂପ ଯହୁଁ ବହିଲା ।
ନର ଦେହକୁ କହିଲା । ୨୦ ।

ପୁଣ୍ୟକୁ ବାଞ୍ଛିତ କର,
ପିଣ୍ଡରୁ ପଗଣ ନାହିଁ ନା ଆର ।
ପରମ କରିଛୁ ଘର । ୨୧ ।

ଫୁଲ ଫୁଟିଛୁ ନ ଜାଣୁ ।
ଫନ୍ଦା କରିଅଛୁ ଯେବଣ ଦନ୍ତୁ ।
ଫଳ ଅଟେ ତୋର ତନୁ । ୨୨ ।

ବାଛନ୍ଦ କରୁଛୁ ନଢ ।
ବିକାର ତୋ ଦେହ ମନ ପ୍ରକୃଢ ।
ବାହୁନ ପାଟକ ଜାଢ । ୧୩ ।

ଭଜୁଛୁ ଯାହାକୁ ରୁହ
ଭାବ ପୀରତି ଭାଷା ଅଟଇ
ଭ୍ରମ ଅରକ୍ଷିତ କନ୍ଧ । ୧୪ ।

* * *

ମନ ଅଟେ ଯେଉଁ ଜନ ।
ମଦନ ଆରତେ ପ୍ରେମରେ ଛନ୍ନ ।
ମଣ୍ଡ ଗରବଟି ଜାଣ । ୧୫ ।

ଜବଟି ଯାହାକୁ କନ୍ଧ ।
ଜଗତରେ ସେହୁ ଜନମ ହୋଇ
ଯମ ଘର ଅଟେ ସେହୁ । ୧୬ ।

ରାଗ ଶଷା ଯାହା କନ୍ଧ ।
ରଉରବ ନଦୀ ଆସୁଛୁ ବନ୍ଧ ।
ରକତ ମାଏଁସ ଦେଖ । ୧୭ ।

ଲଙ୍ଘିବାକୁ ନାହିଁ କଛୁ ।
ଲଭ ବଣିକକୁ ଧର ରୁ ବାଛୁ ।
ଲକ୍ଷଣ ତୋ ଦେହେ ଅଛୁ । ୧୮ ।

ବିଅର୍ଥେ ଭ୍ରମି ନମର ।
ଭୁର୍ଦ୍ଧାମଣା କର ହେରୁରେ ଧର ।
ଦେହ ଅଦେହ ବିହର । ୧୯ ।

ଶିଷ୍ୟ ବୋଲି ଯା କହୁଛୁ ।
ଶରଣ ପଶ ତୁ ଧ୍ୟାନରେ ବଢ ।
ଶିର ପରେ ଶିଷ୍ୟ ଅଛୁ । ୩୦ ।

ଶୂନ୍ୟମସ୍ତ ଅନ୍ତର୍ଯ୍ୟାମୀ ।
ଶ୍ରବଣ ତଟରେ ନଗମ ଭୂମି ।
ସତ୍ୟପଦ ଗୁରୁ ସ୍ୱାମୀ । ୩୧ ।

ଶୁଣ୍ ତୁ କଥା ଯେତେକ ।
ସହ୍ୟ ପାରିଲେ ତୁ କଷଣ ଦୁଃଖ
ସନ୍ତୋଷ ଲଭନ୍ତି ସୁଖ । ୩୨ ।

ହୀନ ଲୋଭକୁ ବର୍ଜର ।
ହରଣ ନକର ମନରେ ଧର ।
ହୃତ ଅଟେ ତୋ ଶରୀର । ୩୩ ।

କ୍ଷିତ ବୋଲି ଯାହା କହୁ ।
କ୍ଷମା ମହମାଙ୍କ ଚରଣେ ଧାଇ ।
କ୍ଷମେ ଭଣେ ଶ୍ୟାମ ସେବଇ । ୩୪ ।



( ଚଉତିଶା ମଧୁଚକ୍ରରୁ ସଂଗୃହୀତ )

# ଜଗନ୍ନାଥଙ୍କ ନେତ୍ର ବର୍ଣ୍ଣନ

—ଗଦାଧର ସିଂହସାମନ୍ତ

ସ୍ନିଗ୍ଧ ରହୁଥାରେ ସ୍ନିରୁଚାଇ ଚକା ନେଇ
ବୁଡ଼ିଯାଉ ଝାଳେ ତନୁ ତୋ ମିଟିରେ ହୁଡ଼ିଯାଉ ପଛେ ବେଳ......

ମୁକ୍ତ ବାମା ଉଲ୍ଲ ସମ ହେବା ପାଇଁ ଅକାଶ୍ରୁ ଲାବଣ୍ୟ ଅମ୍ବୁ,
ପ୍ରବାଳ ଶକ୍ତିରେ ଭରି ଗସ୍ତୁମ କ ପୂଜେ ମରକତ ଶମ୍ବୁ । ୧ ।

ସୁତାମ୍ର ପେଟୀର ଅନ୍ତରାଳେ ହୀରା ଥାଇଥୋଇ ତନ୍ଦ୍ରି ସେବା,
ଆନନ ତୁଳସୀ କାନନରେ ବସି କରେ ଶାଳଗ୍ରାମ ସେବା । ୨ ।

କୁରୁବିନ୍ଦ ନାଲ-ନୀଳ ଅଖ ଚୂଳା ସ୍ଫଟିକ ଚଷ ଶକଟେ,
ହରନ୍ତେ ପୂର୍ଣ୍ଣମା ସ୍ୱରପେ ଲକ୍ଷିତୁ ଶ୍ରୀମୁଖ ପଙ୍କିଲ ବାଟେ । ୩ ।

କୋକନଦ ମାଳା ଦେଖାଇ କେ ବାଳା ବଦନ କାଳନ୍ଦୀ ହ୍ରଦେ,
ମାଳତୀ ଭେଳାକୁ ଭସାଇ ତନ୍ଦ୍ରିରେ ଭ୍ରମର ବସିଛୁ ମୋଦେ । ୪ ।

ବଳାକ ଦଳବା ପ୍ରତାପ ସ୍ଥଳୀରେ ସ୍ଥାପିତ ଯଣ ଚନ୍ଦ୍ରମା,
ଗଦାଧରକୁ କ ନ ଉଦ୍ଧରିବାକୁ କଳଙ୍କ ମଧ୍ୟରେ ଜମା । ୫ ।



( 'ପ୍ରବନ୍ଧ ପଞ୍ଚାମୃତ'ରୁ ସଂଗୃହୀତ )

# ଭଗ୍ନ ଶିବ ମନ୍ଦିର*

—ଫକୀର ମୋହନ ସେନାପତି

ବୋଲ ଶିବାଳୟ ବୋଲ ସ୍ୱରୂପ
କେ କଲା ଏ ରୂପ କୁତ୍ସିତ ରୂପ ।
ନିର୍ଜନ ପ୍ରାନ୍ତରେ ରହିଛ ଉଭା
ନାହିଁ ତ ଗୌରବ ପୂର୍ବର ଶୋଭା ।
ପୂଜା ପାଇଁ ଶଙ୍କରଙ୍କୁ,
କେବେ କେଉଁ ଭକ୍ତ ସେବା ଅନୁରକ୍ତ
ଆସୁଥିଲେ ଏ ସ୍ଥାନକୁ ?

—୨—

ତୋ ଦେହରୁ ଚୂନ ଗଲାଣି ଗୁଣ୍ଡି,
ବଟ ବୃକ୍ଷ ଚେର ଯାଉଛି ମାଡ଼ି ।
ବାଜୁଥିଲା ଯହିଁ ଘଣ୍ଟା କଂସାଳ,
ଏବେ ରଡୁଛନ୍ତି ଫେରୁ ଶୃଗାଳ ।
ଥିଲେ ଯହିଁ ଭକ୍ତମାନେ,
ଖପଣ ଭୁଜଙ୍ଗେ ଫେଣା ଟେକି ରଙ୍ଗେ
ଖେଳୁଛନ୍ତି ସେହି ସ୍ଥାନେ ।

---

* ହାଟ ସମ୍ମୁଖରେ କାଠଯୋଡ଼ୀ ନଦୀ ଦକ୍ଷିଣ କୂଳରେ ଅବସ୍ଥିତ ମୁକାମେଶ୍ୱର ଭଗ୍ନ ଶିବ ମନ୍ଦିର । ଲିଛମନ ହାକେଇ ଏହି ମନ୍ଦିର ନିର୍ମାଣ କରାଇଥିଲେ ।

—୩—

ଶିବ ଚତୁର୍ଦ୍ଦଶୀ ନିଶିରେ ବସି
ଦୀପାବଳୀ ଜାଳି ସ୍ନାନ ଉପସୀ
ହୁଳହୁଳି ଦେଇ ଶଙ୍ଖ ବଜାଇ
ବସିଥାନ୍ତି ଉଜାଗରରେ ଆଇ
କରୁଥିଲେ କଣାବକା,
ଚଣା ଭୁଜା ଚୂଡ଼ା    ମିଠାଇ ଉଖୁଡ଼ା
ଦୋକାନୀ କଲେ ଖବକା ।

—୪—

ପ୍ରତିଦିନ ଆସୁଥିଲା ତ ମାଳୀ,
ଶମ୍ଭୁ ଶିରେ ଜଳ ଦେବାକୁ ଢାଳି ।
ଚମ୍ପାଫୁଲ ବେଲପତ୍ର ଚଢ଼ାଇ,
ଭକ୍ତ ମନୋବାଞ୍ଛା ପୂରଣ ପାଇଁ ।
ଏବେ କି କେ ଆସେ ଅରେ ।
ସମ୍ପଦ ବେଳରେ    ଲୋକେ ସମାଦରେ
ପଶ୍ଚେ ବିପଦରେ ।

—୫—

ଆଗେ ଥିଲା ଶୋଭା ପବିତ୍ର ସ୍ଥାନ,
ଏବେ ଜନଶୂନ୍ୟ କୀର୍ତ୍ତି ଶ୍ମଶାନ ।
ଆହେ କୀର୍ତ୍ତିମନ୍ତ ଦେଖ ତ ଆସି,
କି କଲାଣି କାଳ କୀର୍ତ୍ତି ବିନାଶି ।
ପବିତ୍ର ଶୋଭା ଭଣ୍ଡାର,
ସେ କାଳ କବଳ    ସ୍ୱର୍ଗ ବେକଟାଳ
କଲାଣି ସେ ଛାରଖାର ।

—୬—

ପଡ଼ିଛୁ ଦେଉଳ ପଥର ବୃଣି
ପକାଇଛୁ କାଳ ଦାନ୍ତରେ ଝୁଣି ।
"ମଦ୍ୱମ୍ନଃ ପାରନ୍ତେ—" ସ୍ତବ ବ୍ରାହ୍ମଣେ
ପଢ଼ି ତୋଷୁଥିବେ ଭକତ ଗଣେ ।
କାହ୍ୱାନ୍ତ ସେ ବପ୍ରବରେ,
ଦେଉଳ ଫାଟରେ ବାୟୁ ପଶି ଝରେ
ଶୁ ାଉଛୁ ମନ୍ଦ ସ୍ୱରେ ।

—୭—

ଘାଟ ନାଉରଏ ତୋତେ ଅନାଇ,
ଆପନ୍ତ ପୂର୍ବୀଶ୍ୱ ନାଆକୁ ବାହ୍ନ ।
ଏବେ ସେମାନଙ୍କୁ ମାଡ଼ୁଛୁ ଡର,
ନାଏ ବାଜବ ବା ଭଙ୍ଗା ପଥର
ଜଗତରେ ଏହ୍ୱ ଖ୍ୟାତ,
ଭରସା ଆଲୋକ ଥିଲ ଯେଉଁ ଲୋକ
ମଲେ ହୁଏ ଭୂତଖ୍ୟାତ ।

—୮—

ମୋ ଦେହ ସମସ୍ତି ମାଂସ ଶୋଣିତ
ମାଙ୍କଡ଼ା ପଥରେ ଥିଲୁ ନିର୍ମିତ ।
ତୋହ୍ର ଦଶା ଦେଖି ମାଡ଼ୁଛୁ ଡର,
କାଳ ମୁଖେ ମୁହିଁ କେତେ ମାତର ।
ଥିଲୁ ମୁଖ୍ୟକ୍ଷେତ୍ର ସ୍ଥାନ,
ଯେହ୍ନ ମୁଖପାଇଁ ଭାସିଗଲେ କାହିଁ
କେ ରଖିବ ତୋର ମାନ ।

—୯—

"ଅଷ୍ଟ କୁଳାଚଳ ସପ୍ତ ସମୁଦ୍ର"
"ବ୍ରହ୍ମ ପୁରନ୍ଦର ମାର୍ତ୍ତଣ୍ଡ ରୁଦ୍ର"
ତୁମ୍ଭେ ଆମ୍ଭେ କେହ ରହିବା ନାହିଁ
ଏତେ ହିଂସା ଦ୍ୱେଷ ତେବେ କପାଇଁ ।
ଦେଖ.ତହିଁ ନିଦର୍ଶନ
ଭାଙ୍ଗି ଶିବାଳୟ ପବନ ଆଳୟ
ଭାଙ୍ଗି ଗଲେ ଲଛମନ ।



( ଉତ୍କଳ ସାହିତ୍ୟ—ପଥମ ବର୍ଷ—ପ୍ରଥମ ସଂଖ୍ୟାରୁ ସଂଗୃହୀତ )

# ପୁଷ୍ୟାଭିଷେକ

- ରାଧାନାଥ ରାୟ

ଅଭିଷେକୋତ୍ସବ ଦର୍ଶନ
ଆସେ ସିଂହ ଦୁଆରେ
ବଳେ ଆଜ ଦେବ-ଦେବୀଏ
ଯେଝା ପୂଜା ସମ୍ଭାରେ ।

କେତେକ-କାନନ-ସଙ୍କୁଳ
ରମ୍ୟ ସିକତା ସ୍ଥଳ
ଗୁଢ଼ ହରଚଣ୍ଡି ଆଗତ
ଆଜ ଶ୍ରୀନୀଳାଚଳ ।

ଭଗବତୀ ବାଣପୁରରୁ
ଉପନୀତ ସ୍ୱଗଣେ,
ଶୋଳଶି ଦେଖଇ ସ୍ୱମୁଖ
ସନ୍ଧି ହ୍ରଦ ଦର୍ପଣେ ।

ପ୍ରଭା ମଣ୍ଡଳରେ ମଣ୍ଡିତ
ତନୁ କନକ ଗୋରା,
ତୈଲଙ୍ଗୀ ବସନ ଭୂଷଣେ
ପୁଣି ଦିଶଇ ଚୋରା ।

ଉଭା ସେ ଭୁବନଈଶ୍ୱରୀ
ହେମଗିରି ବାହିନୀ,

ଏକାମ୍ର କାନନ-ଦେବତା
ବନ ପୁଷ୍ପ ଶୋଭିନୀ ।

ନରେନ୍ଦ୍ର-ମଉଳି-କୁସୁମ-
ରେଣୁ-ରକ୍ତ-ଚରଣା,
ମୈନାକ ଶିଖର-ବାସିନୀ
ରଣପୁର-ମଣ୍ଡନା ।

ନାୟକ-ଅର୍ଚ୍ଚିତ ଚର୍ଚ୍ଚିକା—
ଦେବୀ ବାର୍ଙ୍କି-ଈଶ୍ୱରୀ,
ମହାନଦୀ କୂଳେ ଯାହାଙ୍କ
ଅଧିଷ୍ଠାନ ଶିଖରୀ ।

ମଣ୍ଡନ୍ତି ବଦନ ମଣ୍ଡଳ
ଯେହ୍ନ ସଦା ସୁହାଗେ
ସରଣ୍ଡା ଦର୍ପଣ ଅଂଶୁପା
ଶତଦଳ ପରାଗେ ।

ବରୁଣୀ ଶଇଳ ଶିଖରେ
ପୁଣି ଯେହ୍ନ ବସନ୍ତ,
ଧୂଅନ୍ତି ଯାହାଙ୍କ ଚରଣ
ଝର ଲହରୀ ପନ୍ତି ।

ଏକାନ୍ତେ ସୁକାନ୍ତ ତନୁଜା
ତାର ଶୈଳ ବିହାର
ଗ୍ରୁଣ୍ଡି ଦେବୀ ଦ୍ୱାର ଚଣ୍ଡିକା
ବଜେ ସିଂହ ଦୁଆର ।

ହାଟକ-ଗଉରୀ କଟକ-
ଚଣ୍ଡୀ ନାଗରୀ ବେଶେ,

ଅମଳ ରଜତ କୁସୁମ
ଶୋଭେ ଶ୍ୟାମଳ କେଶେ ।

ସକଟ ତାରଣୀ ଝଙ୍କଡ଼
ଦେଖି ସିଂହ ଶାରଳା
ଭଲ୍ଲୁକ ସ୍ୱକଟ କାକଟ-
ପୁର ମହାମଙ୍ଗଳା ।

ଚିଲିକା-ଲହରୀ-ମାଳିକା
ଭେଦ ଗିରି ଉତ୍‌ଥିତ
ତଉଦରେ ନୀଳ ଚିଲିକା
ବକ୍ଷ ତରଙ୍ଗାୟିତ ।

ଚନ୍ଦ୍ରାଲୋକେ ମଣ୍ଡି ନିଶୀଥେ
ଜଳ ଦେବୀ ସଙ୍ଗୀତ,
ଶୁଣନ୍ତି ଚକିତେ ନାବିକେ
ଦୂରେ ବାହୁଁ ବୋଇତ ।

କାଳିଜାଇ ଦେବୀ ଆଗତ
ଗୁଡ଼ ଯେ ଗିରିଚୂଡ଼ା·
ଦଶଇ ପରମ ମଞ୍ଜୁଳ
ଶିରେ ତେଲିଙ୍ଗୀ ଚୂଡ଼ା ।

ମହୋଦଧି ଫେନ ପୁଞ୍ଜରୁ
ଜାତ ଯେତେ ଅପ୍‌ସରୀ,
ରମାଙ୍କର ବାଲ୍ୟ ସଙ୍ଗିନୀ
ସିନ୍ଧୁ ଶିଖି ସୁନ୍ଦରୀ ।

ସବିତା କୋଣାର୍କ ଦେବତା
ନବଗ୍ରହ ବେଷ୍ଟିତ

ମହା ତେଜଃପୁଞ୍ଜ ବରାହ
ସିଂହ ଦ୍ୱାରେ ଶୋଭିତ ।

ଉଠ ଉଠ ପଡ ସେ ଠାବେ
ଆସି ମିଳିଲେ ଶେଷେ
ଆଣିଥିଲେ ପୃଷ୍ଠ ଭୂଷଣ
ସିନ୍ଧୁ ସୁତା ଆଦେଶେ ।

ରୂପ ରଚନାରେ ବରଞ୍ଚ
ଶିଳ୍ପ ସୀମା ଏ ବେଳ
ଅବନୀରେ ଅବା ଉପମା
କହ କି ଦେବ ଯେଉଁ ?

ପ୍ରତିହାରୀ ଜୟ ବିଜୟ
ଛାଡ଼ିଦେଲେ ସରଣୀ
ପଛେ ଆସି ଆଗେ ପଶିଲେ
ସୁର ସୁର-ରମଣୀ ।

ସ୍ୱଭାବେ ସର୍ବଜ୍ଞ ଦେବଙ୍କ
ଗତି ଅପ୍ରତିହତ
ସୂର୍ଯ୍ୟ ନ ବୁଝିଲେ ଏ କଥା
ହେଲେ ମର୍ମ ଆହତ ।

ମହୋତ୍ସବ ସାର ସକଳେ
ସ୍ୱର୍ଗ ଦ୍ୱାରେ ମିଳିଲେ
ଯେଝାପୁର ଯିବା ମାନସେ
ନିଜ ଯାନେ ଚଢ଼ିଲେ ।

ବେଗେ ଦେବ ଦେବୀ ସ୍ୱପୁରେ
ଗଲେ ନପାଇଁ ଜଣି
ସିନ୍ଧୁଜାତ ଯେତେ ଅପ୍‌ସରୀ
ଗଲେ ତରଙ୍ଗେ ମିଶି ।



('ଚନ୍ଦ୍ରଭାଗା' କାବ୍ୟରୁ ସଂଗୃହୀତ)

# ଶଙ୍ଖଧ୍ୱନି

—ଭକ୍ତକବି ମଧୁସୂଦନ ରାଓ

—୧—

ପଶ୍ଚିମର ଚକ୍ରବାଳେ ବୁଡ଼ଇ ଭାସ୍କର
ପ୍ରଶାନ୍ତ ଦିଗନ୍ତ-ଚ୍ଛାୟା ଆବରେ ଅମ୍ବର ।

ନିଃଶବ୍ଦେ ଗମ୍ଭୀରେ ଧୀରେ ସନ୍ଧ୍ୟା ଶାନ୍ତିମୟୀ
ଶ୍ରାନ୍ତ ମହୀପ୍ରାଣୀରେ ଶାନ୍ତି ବାରି ବରଷଇ ।

ଦିବା ଅବସାନେ ଶ୍ରାନ୍ତ ମୂର୍ତ୍ତି ପାନ୍ଥ ଜନ
ଗୃହ ଧ୍ୟାନେ ଚାଲୁଅଛି ଚଞ୍ଚଳ ଚରଣ ।

ସହସା ସୁଦୂର ଗ୍ରାମେ ବାଜେ ଶଙ୍ଖଧ୍ୱନି
ସ୍ତମ୍ଭିତ ସେ ନାଦେ ଯେହ୍ନେ ନିଖିଳ ଅବନୀ ।

କ୍ଷଣେ କର୍ଣ୍ଣ ଭେଦି ଆହା ସେ ସ୍ୱର ଲହରୀ,
ଶୁଣିଲି ମୁଁ ଆଚମ୍ବିତେ ସ୍ୱପ୍ନାବିଷ୍ଟ ପରି ।

ତହୁଁ ମହା ଜାଗରଣେ ଜାଗିଲା ମୋ ପ୍ରାଣ,
ଶୁଣିଲି ସେ ଧ୍ୱନି ମଧ୍ୟେ ମହା ସିନ୍ଧୁ ତାନ ।

ଅନନ୍ତ ଅର୍ଣ୍ଣବ-ଧ୍ୱନି ମହା ମହୋଦାର
ଅର୍ଣ୍ଣବ-ସମ୍ଭବ ଶଙ୍ଖେ କରୁଛି ବିହାର ।

[ ୫୭ ]

—୨—

ମହା ଅର୍ଣ୍ଣବର ମହା-ପ୍ରଣବ ଝଙ୍କାର
ମନ୍ଦ୍ର ନାଦେ ଶଙ୍ଖ ଅବା ଘୋଷେ ଅନିବାର ।

"ଅନନ୍ତ ଅପାର ସିନ୍ଧୁ ମୋର ମହାଲୟ
ମୋ ଅନ୍ତର ଅନନ୍ତର ନାଦେ ନାଦେ ନାଦମୟ ।

ସେ ଅମୃତ ଆଳୟରୁ ହୋଇ ଅନ୍ତଗତ
ଭୁଲିଛି କି ମୋହେ ତାର ଅମୃତ ସଙ୍ଗୀତ ?

କ୍ଷୁଦ୍ରାଦପି କ୍ଷୁଦ୍ରତର ମର୍ତ୍ତ୍ୟ ଗୃହ ପାଇଁ
ଅବିଦ୍ୟା-ପ୍ରମାଦେ, ପାନ୍ଥ ହେଲ କି ହେ ଭାଇ ?

କେମନ୍ତେ ହେ ପାସୋରିଲ ଜନ୍ମଭୂମି-କଥା
କାହିଁ ତୁମ୍ଭ ରସନାରେ ଅମୃତ ବାରତା ?

ଆସ ଆସ ସୁଗମ୍ଭୀର ମହାଦେବ-ତାନେ
ଜଗତେ ଜଗାଅ ସର୍ବ ଅନନ୍ତ ସନ୍ତାନେ ।

ଅନନ୍ତେ ଜୀବନ-ସ୍ଫୁର୍ତ୍ତି, ଅନନ୍ତେ ଅଭୟ,
ମର୍ତ୍ତ୍ୟ ପ୍ରବାସରେ ଗାଅ ଅମୃତର ଜୟ ।"



( 'ବସନ୍ତ ଗାଥା'ରୁ ସଂଗୃହୀତ )

# ସୁଖ ସ୍ୱପ୍ନ

—ଗଙ୍ଗାଧର ମେହେର

ଧନ୍ୟରେ ସ୍ୱପନ ଧନ୍ୟ ତୋ ମହିମା
ଶକ୍ତିମତ୍ତା ତୋର ଧନ୍ୟ,
ବିଧାତା ଶକ୍ତିକି ବଳି ନକରୁ କି
ଅଦ୍ଭୁତ କର୍ମସାଧନ ?

ଦୂରସ୍ଥ ବନ୍ଧୁର ଦରଶନ ପାଇଁ
ବ୍ୟାକୁଳିତ ହୁଏ ମନ,
ଶତ ଶତ କୋଶ ଗମନ ନକଲେ
ନମିଳଇ ଦରଶନ,

ନିମେଷ ମଧ୍ୟରେ ସେ ପ୍ରିୟ ବନ୍ଧୁର
ସଙ୍ଗେ କରି ସମାଗମ,
ଦେଉ ଯେଉଁ ସୁଖ ଏ ବିଶ୍ୱ ମଧ୍ୟରେ
କେଉଁ ସୁଖ ତାର ସମ ?

ପରଲୋକ ବାସୀ ପ୍ରିୟଜନଙ୍କର
ଦରଶନ ଦୂରେ ଥାଉ,
ଭାବିଲେ ଯା ରୂପ ସମ୍ପୂର୍ଣ୍ଣ ପ୍ରକାରେ
ଭାବନାସ୍ଥ ନୁହେଁ ଆଉ ।

ତୋହ ପ୍ରସାଦରେ ପ୍ରାପତ ହୁଅଇ
ସଜୀବ ଶରୀରେ ତାର,

ଏମନ୍ତ ଶକତ ଦେଖୁ ନାହିଁ ତ ମୁଁ
ବିଶ୍ୱସ୍ରଷ୍ଟା ବିଧାତାର ।

ପରଲୋକ ପ୍ରିୟ ବନ୍ଧୁର ପ୍ରସନ୍ନ
ଶ୍ରୀମୁଖ ସାକ୍ଷାତକାର,
ରାଜ ସୁଖ ଗୁଢ଼ ଇନ୍ଦ୍ର ସମ୍ପତ୍ତିକୁ
କରଇ ଶତ ଧିକ୍‌କାର ।

ବରଦ୍ୱକ ଦେଇ ସମାଗମ ସୁଖ
ବଢାଇ ପାରୁ ଆନନ୍ଦ
ଦେଇପାରୁ ମହା ଦରିଦ୍ରେ କ୍ଷଣକେ
ରାଜ ରାଜେଶ୍ୱର ପଦ ।

କଳ୍ପଦ୍ରୁମ ଥାଉ କାହାକୁ କହନ୍ତୁ
ବୁଝି ପାରୁ ନାହିଁ ମୁହିଁ,
ଆଶୁ କଳପିତ ଫଳ ପ୍ରଦାୟକ
କଳ୍ପଦ୍ରୁମ ଏକା ତୁହି ।

ମନ ସହିତରେ ଗଢ କରିବାକୁ
କେ ଅଛୁ ଶକ୍ତି ସମ୍ପନ୍ନ,
ଦେଖୁଅଛୁ ଏକା ନେଇ ପାରୁ ତୁହି
ପ୍ରାଣିମାନଙ୍କୁ ସ୍ୱପନ ।

ଜୀବନରେ ଯାହ ସହବାସେ ଲବ୍‌ଧ
ହୋଇ ନଥାଏ ଯେ ସୁଖ,
ସେ ଅମୂଲ୍ୟ ସୁଖ ଦେଉ ତୁ ଦେଖାଇ
ମୃତ ପ୍ରିୟ ବନ୍ଧୁ ମୁଖ ।

ଯେ ବୋଲିବ ତାହା ସ୍ୱପ୍ନ କଥା ସିନା
ନିଦ୍ରା ସହ ଭଙ୍ଗଶୀଳା ?

ଅଭଙ୍ଗୁର ତାର ଅଟଇ କି ଏହୁ
ସୁଖମସ୍ତ ଭବଲୀଳା ?

ଥରେ ଯେଉଁ ସୁଖ ଦେଇଥାଉ ପୁଣି
ଦେଇ ପାରୁ ଆଉ ଥରେ
ସେଇ ସୁଖଲାଗି ଶୀଳାଗାର ପରି
ରହିଯାଏ ହୃଦସ୍ତରେ ।

ଭବ ସୁଖ ସବୁ ମାଙ୍ଗି ହେଲେ ଅନ୍ୟ
ଜନ୍ମେ ନପଡ଼ଇ ମନେ,
ଭବ ସୁଖାପେକ୍ଷା ତୋ ଦତ୍ତ ସୁଖକୁ
ଏଣୁ ମୁହିଁ ଶ୍ରେଷ୍ଠ ମଣେ ।



(ଉତ୍କଳ ସାହିତ୍ୟ—ପ୍ରଥମ ବର୍ଷ/୯ମ ସଂଖ୍ୟାରୁ ସଂଗୃହୀତ)

# ଅଦିନ ମେଘ

—ନନ୍ଦ କିଶୋର ବଳ

ମଧୁମାସ ଶେଷେ        ବଇଶାଖ ମାସେ
ବରଷେ ଅଦିନ ମେଘ,
ତା ଦେଖି ଶିଶୁଏ        ଗୀତ ଗାଉଥାନ୍ତି
ଚିତ୍ତେ ଅତି ଉଦବେଗେ ।

ପାଣି ସଙ୍ଗେ ପଡ଼େ        ସରଗ ପଥର
ତା ଦେଖି ବାଳକମାନେ
ସାଉଣ୍ଟି ଖାଇଣ,        ଗୀତ ଗାଉଥିଲେ
ଘୋର ଉଚ୍ଚ ତାନମାନେ ।

"ଖରା କରୁଅଛି        ମେଘ ବରଷୁଛି
ବିଲୁଆ ହେଉଛି ବାହା ।"
ଅଦିନ ବରଷା        କେଡ଼େ ଶୋଭାବନ
କି ବିଚିତ୍ର ଲୀଳା ଆହା !

କାହୁଁ ଆସିଲୁରେ        ଅକାଳ ବରଷା
କି ପାଇଁ ଦେଲୁ ତୁ ଦେଖା ?
ତୋ ଆସିବା ବାର୍ତ୍ତା        ଦେଇ ତ ନଥିଲା
ଋତୁ-ଚକ୍ର-ବିଧି-ଲେଖା ।

ତୋ ଦର୍ଶନେ ଶୁଭେ        ମେଘରେ ମୋ କର୍ଣ୍ଣେ
କାହାର ଦୂର ଆହ୍ୱାନ ?

ଅଜ୍ଞାତ ରାଜ୍ୟର ଅସ୍ପଷ୍ଟ ମୂରତି
ପରଶେ ମୋର ପରାଣ ।

ବିଷାଦର ଛାୟା ପଡ଼ିଛି ନୁଆଇ
ହୃଦ କ୍ଷେତ୍ରେ ଘନ ଘନ ।
ବିଗତ ଜନ୍ମର ସୁଖ ସ୍ମୃତି ଅବା
ଅଲକ୍ଷ୍ୟେ ଦହେ ମୋ ମନ ।

କି ଅବା ଦୂରନ୍ତ ପ୍ରାଣବନ୍ଧୁ କେନ୍ଦ୍ର
ମନେ କରେ କଥା ମୋର,
ଗୁପତେ ମୋ ଆତ୍ମା ବିଦଗ୍ଧ କରୁଛି
ସେ ସ୍ମୃତି ଗୁପତ ସ୍ୱର ।

ଚନ୍ଦ୍ରାର୍ଣ୍ଣବେ ବୁଡ଼େ ମନ ମୀନ ମୋର
ତୋତେ ଦେଖି ନବଘନ,
କାହିଁ ବସି କିଏ ଗାଇଲା ସଙ୍ଗୀତ
ଭାବରେ ବିଭୋର ମନ ।

“ଉବ୍ବ ଉବ୍ବ ବାଜେ ଯୋଡ଼ି ନାଗରା ଢୋ
“କାଉ ଡାକେ କାଆଁ କାଆଁ,
ଖରା କରୁଅଛି ମେଘ ବରଷୁଛି
“ବିଲୁଆ ପୁଅର ବାହା ।”



(‘ନିର୍ଝରିଣୀ’ରୁ ସଂଗୃହୀତ)

# ମିଶୁ ମୋର ଦେହ ଏ ଦେଶ ମାଟିରେ

—ଗୋପବନ୍ଧୁ ଦାଶ

ଦେଶବାସୀ, ବନ୍ଧୁ, ଆତ୍ମୀୟ ସୋଦର,
କାରାଦଣ୍ଡେ ହେଲ ମୋର କି କାତର ?

ଥିଲ ଆଗୁ ଏହା ଜଣାଶୁଣା କଥା,
ସେଥିପାଇଁ ତେବେ କପାଁ ମନେ ବ୍ୟଥା ?

କାତରତା ସିନା କାପୁରୁଷ ପଣ;
ବୀରମାନେ ଅବା ମଣ କରେ ରଣ ।

ପଛଘୁଞ୍ଚା ନାହିଁ ବୀରର ଜାତକେ,
ସମରେ ସେ କେଭେ ପରାଣ ଆତଙ୍କେ ।

ଜାଣିଛ, ଲଗିଛି ଏ ଶାନ୍ତି-ସମର
ନାହିଁ ଏଥି ତୋପ ହାତ ହତିଆର ।

ବଳ ନା ବିଭବ ନାହିଁ ଏଥି ଲୋଡ଼ା;
ନାହିଁ ଲୋଡ଼ା ଯାନ ରଥ ହାତୀ ଘୋଡ଼ା ।

ଆଧ୍ୟାତ୍ମିକ ବଳେ ଲଗିଛି ଲଢ଼ାଇ;
ଭାଙ୍ଗିବାକୁ ପଶୁ ଦଳର ବଢ଼ାଇ;

ଗୁଢ଼ ଧନ-ଆଶା ଘର ଦ୍ୱାର ମାୟା;
ଅଯଙ୍ଗ ଶସ୍ତ୍ରେ ଯେ ସାଜିଅଛୁ କାୟା ।

ଅହିଂସା ବଳରେ ଯେଉଁ ବଳୀୟାନ;
ଏ ରଙ୍ଗ ପ୍ରାଙ୍ଗଣେ ତାର ଏକା ସ୍ଥାନ ।

ଏଥିରେ ପ୍ରଥମ ଫଳ କାରାଦଣ୍ଡ;
ପଛେ ହୋଇଯାଉ ଦେହ ଖଣ୍ଡ ଖଣ୍ଡ ।

ରୁହି ଏହା ମୁହିଁ ପଶିଛୁ ସଂଗ୍ରାମେ
ନାହିଁ ମୋ ବିଶ୍ୱର ମାନ ଅପମାନେ ।

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ

ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼,
ପୁରୁ ତହିଁ ପଡ଼ି ମୋର ମାଂସ ହାଡ଼ ।

ସ୍ୱାଧୀନତା ପଥେ ଚଳେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।

ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୁରୁ ଏ ପରାଣେ ଏହି ଶେଷ ଭିକ୍ଷା ।



('ବନ୍ଦୀର ଆତ୍ମକଥା'ରୁ ସଂଗୃହୀତ)

# ରାମଚଂଡ଼ୀରେ ରାତି

—ନୀଳକଂଠ ଦାସ

ଶୁଅ ରେ ବାଳକେ ଆଶ୍ରମେ, ଏଥି ନାହିଁତ ଘର,
ଶୋଇଛ ତ ସୁଖେ ଆଦର ରାମଚଂଡ଼ୀ-ମନ୍ଦିର ।

ଉତ୍କଳର ପୁଣ୍ୟଭୂମି ଏ, ଏବେ ସିକତା-ଖେଳେ
ଗୃଡ଼କଂକେ ମୃଗ ଚଳଂନ୍ତି ଅପଂତର ପ୍ରାଂତରେ ।

ଦିବାକର-ପୁର ସୁଂଦର ଚୈତ୍ୟ ଉନ୍ନତ ଚୂଡ଼ା,
ସାଗର-ସଂଘାତ-ପବନେ କରୁନାହିଁ ତ କ୍ରୀଡ଼ା ।

ବାରିଧି-ଉରସେ ତରଣି ବସି ଅରୁଣ ରଥେ,
ସିଂହାସନେ ପଶୁ ନାହାନ୍ତି ସିଂହ-ଦୁଆର-ପଥେ ।

ଚଂଦ୍ରଭାଗା ବଟ କଂପନେ ରକ୍ତ-ପୁଣ୍ୟ-ହୃଦୟ
ନାଚୁନାହିଁ ଭାବ-ପୁଲକେ, ଲଭି ଦୂରନ୍ତ-କ୍ଷୟ ।

ଏହୁ ରାମଚଂଡ଼ୀ ଯବନ-ଦଂଡ଼େ ଅସିଣ ଏଥି,
ଆଉ ସେହିଦିନୁ ଫେଟଇ ନାହାଂନ୍ତି ତ ହେ ଗଡ଼ !

କୁଶଭଦ୍ରା ଘୁଂଚ ଆସିଛୁ, ସିଂଧୁ ଯାଇଛୁ ଫେର,
'ସ୍ବରସ' ନଗରୀ ଭାଂଗିଛୁ କାଳ-ଭୀମ-ଲହରୀ !

ଭୁଂଗ ଦେବାଳୟ କୋଣାର୍କେ ଭଗ୍ନ ସ୍ତୂପ ଭିତରେ ।
ରତ୍ନ-ସିଂହାସନେ ତପନ ବଜେ ପ୍ରଖର କରେ !

ମୂର୍ତ୍ତି-ଶିଳ୍ପ-କଳା ମଣ୍ଡନେ ଭାରତ୍ୟ ଆଦର୍ଶ ରହେ,
ଇତିହାସ ସାକ୍ଷ୍ୟ ପ୍ରକାଣ୍ଡ ଶିଳା ବାହାର ଶୋହେ ।

ଜୀର୍ଣ୍ଣ ମୁଖଶାଳା ଉଠିଛି କୀର୍ତ୍ତି-କଂକାଳ ପରି,
ପ୍ରଭୁ ପୁରୁଷଙ୍କ ପ୍ରେତ ସେ, ଏବେ ହସେ ବାହାରି ।

କାଳର ଯାତନା ଦଶଇ ଅଙ୍ଗେ ବକାଣି ତାର,
ବୁଝିଲ କି ଶିଶୁ କଳାର ତତ୍ତ୍ୱ ଏତେ ବହାର ?

ଶୋଇଛନ୍ତ ତ ଏବେ ଶୁଣିବ, କେତେ ସ୍ୱପନ-ବାଣୀ,
କାଳ ଗୀତ ସବୁ ଦେଖିବ, ପ୍ରତି ଲେମେ ଉଜାଣି ।

ଦେଖିବ ହେ କେତେ ବନ୍ଧନ ପ୍ରାଣ ପୁଲକ-ଭରେ
ସମର ଦୁଂଦୁଭି ଶୁଣିବ ରୁଦ୍ଧ ଚଉଦୁଆରେ ।

ଯାଜପୁର କୁଂଡ଼େ ପଢ଼ିବ ଅଶ୍ୱମେଧ ଆହୁତ
ତୋପାଲ-କଣ୍ଠକେ ରମଣୀ-ଭୃଂଗ-ସ୍ୱଜନ୍ୟ-ଗୀତ,

ଶିଳ୍ପୀ ପଣ୍ୟଜୀବୀ ପଂଡ଼ିତ, ପୁଣି ଦେଖିବ ଖୀରେ;
ଭୀମ ରଣଭେରୀ ଶୁଣିବ ବାରବାଟୀ ଦୁଆରେ ।

କତ ଗିରିଦୁର୍ଗ ଉତ୍କଳେ ନାଚିଯିବ ନୟନେ;
କୃଷକ ବାହିନୀ ଉଠିବେ ଗ୍ରାମ ନଗର ବନେ,

ଗିରି-ଦସ୍ୟୁ-ଭେରୀ ନିନାଦେ ଉଠି ପ୍ରତି ନିନାଦ
ସ୍ତରୁ ଗିରିନଦୀ ପ୍ରପାତେ ମିଶିଯିବ ଶବଦ;

ମେଘାସନ ଧୂମ୍ର ଶୀର୍ଷରୁ ଯିବ ମହେନ୍ଦ୍ର ଯାଏ
ସମୀର ଲହରେ ଶକତି ଖେଳ ଉର୍ମି ପରାଏ;

ଭଗୀରଥ ପୁଣି କାବେରୀ ହୋଇ କେବେ ଅଧୀର,
ଦେବେ ଥରେ ଥରେ କଂପାଇ ତାଙ୍କ ଦୂର ପଲ୍ଲୀ;

ତୁଂଗ ଦ୍ରୁମଗିର ହସିବ ଶୁଭ୍ର-ତୁହିନ-ହାସେ
ଅବାଚୀ ଦିଗନ୍ତେ କୁମାରୀ ଊର୍ମି-ଭଂଗ ବିଳାସେ,

ଚିଲିକା ଗରଭେ ଉଠିବ ଶତ ବୋଇତ ଭାସି,
ଅରୁଣିତ ଦେଖି ବାରୁଣୀ-ପଟେ ଜଟିଆ ନାସି;

ଗଉରବ-ଗାଥା ଶୁଣିବ, ବଂଶୀ ଗାଇବେ କେତେ;
ଭୀମ ତରବାରି-ଫଳକ ଯୋଧେ ଟେକିବେ ହାତେ ।

କବରୀ ଫିଟାଇ ତରୁଣୀ ମଧୁଶଯ୍ୟା ବାସରେ
'ରଣ ଜିଣି ଆସି ବାଂଧବ' ବୋଲି ଛୁଡ଼ିବେ ଶିରେ ।



('କୋଣାର୍କ' କାବ୍ୟରୁ ସଂଗୃହୀତ)

# ଧଉଳି ପାହାଡ଼

—ପଦ୍ମଚରଣ ପଟ୍ଟନାୟକ

ଧଉଳି ପାହାଡ଼ ଧଉଳି ପାହାଡ଼
କି କଥା କହିଲି ରାଜାଙ୍କ କାନେ ।
କି କଥା ଗାଇଲ ଘଡ଼ିକେ ରାଜନ
ବୁଡ଼ିଲେ ଅପୂର୍ବ ସମାଧି ଧ୍ୟାନେ ।

ରଣୋନ୍ମାଦେ ମାତି ବିଜୟ ଉଲ୍ଲାସେ
ଗଡ଼ୁଥିଲେ ତବ ଚରଣ ତଳେ
ଗଢ଼ୁଥିଲେ କେତେ ଆଶାର ସଉଧ
କାନ୍ଦିଲେ ଭାସିଲେ ନୟନ ଜଳେ ?

ଧ୍ୟାନ ଭଙ୍ଗେ କ୍ଷଣେ ଚାହିଁଲେ ଚକିତେ
ତବ ଶିରେ ପୁଣି ପୋତିଲେ ମଥା
'କି କଲି' 'କି କଲି' କହିଲେ ବିକଳେ
ଲଭିଲେ ବା ପ୍ରାଣେ ଦାରୁଣ ବ୍ୟଥା !

"କି କଲି କି କଲି କାହୁଁ ଆସି କାହିଁ
ପଡ଼ିଲି କି ଘୋର କିଲ୍ବିଷ ଜାଲେ !
"କିବା କଥା ଲାଗି ଏମନ୍ତ ବହିଲି
ଲେଖିଲି କି ବିଧି ଏ ଦଶା ଭାଲେ !

"ଶୋଣିତ ସ୍ରୋତ ନଦେ ବୁହାଇଲି
କେସନ ଏ ଶୋକ ଲଭିବ ମୋର ?

"ଆଗେ ଆଗେ ମୋର ଜଳାଇ ବସିଲ
ଜୀବନାଶୀ ଚିତା ଖାଣ୍ଡବ ଘୋର ?

"କେତେ ପ୍ରାଣୀ କା ଜଳେ ନାଶିଲ ଏ କରେ
କେତେ ଦେଶ କଲ ଶ୍ମଶାନମୟ
"କେତେ ସୁଖ ସୌଧ ଜାଳିଛ ଅନଳ
କେତେ ପ୍ରାଣେ ମୂର୍ଚ୍ଛ ଅଣିଛ ଭସ୍ମ ।

"କି ପିପାସା ଘେନି ଲଭିଲ ଜନମ
କାଳେ କାଳେ ତାର ନ ହେଲ ଶାନ୍ତ
"ସାରା ଜୀବନଟା ଅବୋଧ ବସିଲ
କି ଅପାର ଆଶା ମଧୁର ଭ୍ରାନ୍ତ ।

"ଲୁବ୍ଧ ମୃଗ ପରି ମୁଗ୍ଧ ହୋଇ ମୁହିଁ
ଇନ୍ଦ୍ରିୟର ସୁଖେ କାଟିଲି କାଳ
"ଜ୍ୱଳନ୍ତ ଅନଳେ ଇନ୍ଧନ ଯୋଗାଇ
ପାପେ ପୂର୍ଣ୍ଣ କଲି ଏହି ସଂସାର ।

"ଧୂମକେତୁ ପରି ଭୀମ ପୁଚ୍ଛ ଧରି
ବୁଣିଲି ମଡ଼କ ଯାତନା ବୀଜ
"ଲୋକ-ଅଶ୍ରୁ-ରକ୍ତ ସ୍ରୋତେ ଭାସି ଭାସି
ଏ ଗିରି ଚରଣେ ଆସିଛି ଆଜି ।

"ଏ ଗିରି ଚରଣେ ଏହି ନଦୀକୂଳେ
ଲଭିଲିଣି ଆଜି ପରମ ଶିକ୍ଷା;
"ଏ କଳିଙ୍ଗ ଦେଶ ହେଲେ ମୋର ଗୁରୁ
ଘେନିବ ଏଥି ମୋ ଜୀବନ ଦୀକ୍ଷା ।

"ଏହି ଦେଶେ ବସି ଏହି ନଦୀକୂଳେ
ଫେରାଇବ ମୋର ଜୀବନ ଗତି,

"ସାକ୍ଷୀ ରହିବ ମୋର ସର୍ବ ଦିଗପାଳ
ସାକ୍ଷୀରହିବ ମୋର ଜୀବନ ପଥ ।

"ଶୁଭ ଯୋଗେ ପଡ଼େ କଳିଙ୍ଗ ବିଜୟେ,
ବଳିଲା ମୋ ମନ ଟଳିଲା ବଳ
"ଦେବ ଦେବଣେ ଆସି ଦେବ ଅନୁଗ୍ରହେ
ଘେରିଗଲି ଏ କେଉଁ ତପସ୍ୟା ଫଳ ?

"ଏହି ତପଫଳ ଏ ଧର୍ମବଳ
ଜୀବନର ମୋର ହେଉ ଭୂଷଣ,
"ସେହି ବଳେ ପ୍ରଭୁ ପୂଷ୍ଠାଇ ଦିଅ ହେ
ଲକ୍ଷ ଲକ୍ଷ ପ୍ରାଣୀ ପ୍ରାଣ କଷଣ ।"



('ଧଉଳି ପାହାଡ଼' କବିତାରୁ ଗୃହୀତ)

# ଦୁଃଖୀଧନ

—ଗୋଦାବରୀଶ ମିଶ୍ର

ଘୁନାଗଡ଼େ ଆଜି ପଡ଼ିଛି ଚହଳ—
"ଧନ୍ୟ ଦୁଃଖିଧନ ଆହା !"
ନେତ୍ର ଲୁହ ହାତେ ପୋଛୁ, ଶୁଣନ୍ତି ଲୋ,
କାନେ ଦୁଃଖିଧନ ମାଆ ।

ଝୁରନ୍ତି, "ବାବୁରେ, ଚାଲିକି ତୁ ଗଲୁ,
ସାରି ଏ ଜଗତ ଲୀଳା,
ଏକେଇର ବଳ କୋଳକୁ ମୋରରେ,
ଚଉଦ ବରଷ ପିଲା ?

ପୁଅ ବୋଲି ପର ଡାକ ମୁଁ ନ ଥିଲି
ସୁଖ ଶରଧାରେ ଢନେ,
ଭିଡ଼ ଯମ ନେବ ଏତେ ବେଗେ, ବାବୁ,
ବସ୍ୱର କି ଥିଲି ମନେ ?

ଏ ଦେହ ଧରି ମୁଁ ବଞ୍ଚି କି ପାରିବି
ମୁହୂର୍ତ୍ତେ ମହୀରେ ଯତେ ?
ତୁହି ଯେଉଁ ବାଟେ ଯାଇଛୁ, ବାବୁରେ
ନେଇ ବେଗେ ଯାଆ ମୋତେ ।"

ସେ ଦେହ ଧରି କି ପୁଅ ବିନେ ମାଆ
ପାରନ୍ତେ ମହୀରେ ଜୀଇଁ ?
ମାଆ ପୁଅଙ୍କର ସରଗେ ମିଳା ଲେ
ଭେଟ ପୁଣି ହେଲା ଯାଇ ।

ହେଲେ, ଦୁଃଖିଧନ ରାଇଜର ମାନ
ରକ୍ଷି ଏକା ଗଲା ହାତେ,
ଗଡ଼ଦ୍ୱାର ଡେଇଁ ପଶିଲେ ଅଣଲେ,
ସବୁ ଯଶଥିଲା ସତେ ।

ବୁଡ଼ି ପାଣି ତଳେ ସୁନାଗଡ଼ ଏବେ
ଯାଉଛି ଚଲକା ହୋଇ,
ରଜା ପ୍ରଜା ଜଣେ ନାହିଁଛି କେହି ଲୋ,
ତା ଗୁପ୍ତ ଗରଭେ ଶୋଇ ।

ହେଲେ, 'ଛଫଗଡ଼ ଘାଟି' ନାଆଁ ମର୍ତ୍ତ୍ୟେ
ପ୍ରକଟ ହେଉଛି ଆଜ
ଛଫ ହାତେ ଗଡ଼ ରକ୍ଷି, କୁମର ଲୋ,
ପଡ଼ିଥିଲା ନେଫ ଭୁଜ ।

ସେ ଘାଟୀ ପାଖକେ ରହିଅଛି ମାଆ;
ଆର ପାଖେ ଅଛି ଝିଅ,
ଜୀବ ଥାଉ ମଝେ ଭେଟ ନୋହୁଛି ଲୋ;
କେମନ୍ତେ ବସ୍ତୁର କହ ?

ମଧୁ ବାରଷ୍ଟର ଚଫଲେଖି ଘରେ
ରହିଛି ନାହିଁକି ଦେଖି ?
ଓଡ଼ିଆଣୀ ବେଶ ପିନ୍ଧିଛି ମାଆ ଲୋ;
ଝିଅ ତେଲଙ୍ଗାଣୀ ଢଙ୍ଗ ।

ଜୀବନବନ୍ତ ଅଛ ସେ ବୁଢ଼ା ମଧୁତ;
ଦେଶ ଶ୍ରେଷ୍ଠ ପୁଅ ଅଥ୍ଯେ,
ଏ ରାଇଜ ଯାକେ ନାଆଁ ତା ଲୋକେ ଲୋ,
ଘୋଷି ହେଉଛନ୍ତି ମୁହେଁ ।

ଗୁଣ କାତ୍ତି ତାର ଗାଇ ମୁଁ ବସିଲେ;
ହେବ ପୋଥିକର ପାଠ,
କେ ଲେଉ୍ଡ ପଢ଼ିବ, କେ ଦେବ ଫିଙ୍ଗି ଲେ,
ଜାଣି ହାଟି ଯିବ ବାଟ ।

ବଡ ସ୍ଥାନମାନ ଆମଘର ଦଶା;
ଶୁଣିଲେ ଫାଟଇ ବୁକୁ;
ଚଉଖଣ୍ଡ ହୋଇ, ଓଡ଼ିଶା ଦେଶ ଲେ;
ପଡ଼ି ହୁଏ ଧୁକୁ ଧୁକୁ ।

ଗଣ୍ଡିରୁ ପଡ଼ିଛୁ ଛଡ଼ ମୁଣ୍ଡଠାବେ
ପାଦ ପଡ଼ିଅଛୁ କାହିଁ;
ହାତ ପୁଣି ଆନେ ଗଡ଼ୁଛୁ ପଡ଼ି ଲେ;
କେବେ କ ନଦେଖି ଯୁହିଁ ?

ବଣ ପରବତ ନଦୀ ପଦା ବଲେ
ଉଜଲ ସରଗ ପ୍ରାଏ
ଆମ ଏ ଓଡ଼ିଶା ଜନମ ଭୂଇଁ ଲେ
ହେନ୍ତୁ ମନେ ଥିବ ଥୟେ ।

ସେହି ଯେ ଜନମ ଭୂଇଁ ମା ଆମର
ଦଇନେ ପଡ଼ିଛୁ ଆହା !
ଧୂଏ କାନ୍ଦ ତଳେ ଲୋଟନ୍ତି ଦୁଃଖେ ଲେ;
ଦେଖି କେ ହେଉଛୁ ସାହା ?



( 'ଦୁଃଖିଧନ'ରୁ ସଂଗୃହୀତ )

# ସବୁଥିରୁ ବଞ୍ଚିତ କରି କେଉଁ ଯଶ ବାନା ଉଡ଼ାଇବ ହେ

—ଲକ୍ଷ୍ମୀକାନ୍ତ ମହାପାତ୍ର

ସବୁଥିରୁ ବଞ୍ଚିତ କରି
କେଉଁ ଯଶ ବାନା ଉଡ଼ାଇବ ହେ ?
ଯାହା ଦେଇଥିଲ ସବୁ ତ ନେଲଣି
ଆଉ ଏବେ କସ ଛଡ଼ାଇବ ହେ ! (ଘୋଷା)

ସଂସାରେ ଯେ କରଇ ଆଶ,
ଧାଏ ସିନା ସେ ତୁମ୍ଭ ପାଶ,
ସକଳ ଭରସା ଯାର ତୁଟିଲଣି
କସ ବୋଲି ତାକୁ ଡରାଇବ ହେ ? (୧)

ଠକ ଠକ ଥରକୁ ଥର
ବୁଝିଲଣି ତୁମ ଚୃତର,
ମନେ ଯାଉଛ କି ହାଟ ମଝିଟାରେ
ଛୁଡ଼ା କରି ହାଟ ହୁଡ଼ାଇବ ହେ ? (୨)

ତୁମ୍ଭ ଫନ୍ଦା ଏଡ଼ିବ ବୋଲି
ସବୁ ଧନ୍ଦା ଦେଲଣି ଠେଲି
ଘର ଦଉଡ଼ି ସେ କାଟି ସାରିଲଣି
କେଉଁ ଫାନ୍ଦେ ତାକୁ ଜଡ଼ାଇବ ହେ ? (୩)

ହାତ ଠାର ଲୋଭ ଦେଖାଇ
ତାଙ୍କ ନାଟ ଦେଖିବା ପାଇଁ
ସ୍ରିହ୍ୱାଣ କରୁଛ ଆନ୍ଧର ଥରେ କି
ନାକ ଘଷି କାନ ମୋଡ଼ାଇବ ହେ ? (୪)



( 'ଜୀବନ ସଙ୍ଗୀତ'ରୁ ସଂଗୃହୀତ )

# ଯଦି କାଲି ମରିଯାଏ

—ଗୋଦାବରୀଶ ମହାପାତ୍ର

ଯଦି ମୁହିଁ କାଲି ମରିଯାଏ
ଜୀବନ ଯାତ୍ରା ସରିଯାଏ
କଳା ମେଘ ତଳେ ବାରିଧାରା ହୋଇ
ଜନମି ଯେମନ ଝରିଯାଏ ।

ତୃଣଆଡ଼େ ରବ ଘନ ଘନ—
ଥିବ ଉଠୁଥିବ ଗିରିବନ
ବନ୍ଧୁ ଯାଉଥିବ ଗିରି ଝରଣାଟି
ମୋହର ହେବ ସେ ସରଜନ !

ଫୁଲ ଫୁଟିଥିବେ ଦଳେ ଦଳେ
ସବୁଜ ପତର ତଳେ ତଳେ
ସେ ଫୁଲ ଦଳରେ ମଧୁ ହୋଇ ମୁହିଁ
କମିତ ସେ ତଳେ ବୋଧୁ ପଡ଼େ ।

ହଠାତ୍ ଯେବେ ମୁଁ ଯାଏ ମରି
କାମ ଧାମ ଅବା ନାହିଁ ସାରି
ପୂରଣ କରି ଆଉ ଥରେ ଆସି
ସାଗରୁ ଜଳଦ ବାରି ପରି ।



( 'ଗୋଦାବରୀଶ ଲେଖାବଳୀ'ରୁ ସଂଗୃହୀତ )

# ଜନ୍ମଦିନ

—ଡକ୍ଟର ହରେକୃଷ୍ଣ ମହତାବ

କାଳାତୀତ ଯେ ସୀମିତ କରୁଛ ତାକୁ
ଦିନ-ମାସ-ବର୍ଷର ହିସାବେ
ହସୁଥିବ କାଳ ସିନା
ଝୁରୁଥିବ ନିର୍ବୋଧ ମନୁଷ୍ୟ ।
ଅନନ୍ତ ପଥର ଯାତ୍ରୀ, ଚାଲିଛି ପଥିକ
କାହିଁକି ମାପୁଛ ପଥ
କିଲୋମିଟର—ମାଇଲ ହିସାବେ ?
କାହା ପାଇଁ ଖୁଣ୍ଟ ପୋତା ଝବଛି କି କେବେ ?
ମାଇଲ ଖୁଣ୍ଟକୁ ଦେଖି ଦୂରପଥ ଯାତ୍ରୀ
ଅବସନ୍ନ ହେବ କ୍ଲାନ୍ତ ଅନୁଭବି ।।
କାହିଁକି ପକାଇଦିଅ ମନେ ତା' ବୟସ ?
ଯାତ୍ରା ଶେଷେ—ବିଶ୍ରାନ୍ତିକା ଜଗାଅ ତା'ମନେ ? ଏବଂ
ସ୍ମରଣ କରାଇଦିଅ
କୃତାନ୍ତ ନଗରୀ କ୍ରମେ ନିକଟୁ ନିକଟ ?
ଯେ ନଗରୀ ପାରି ହୋଇଯିବ ସେଇ ଯାତ୍ରୀ
କି ଲାଭ କହିବା ତାକୁ ବୟସ ତା'କେତେ ?
ଜ୍ଞାନ ହେବା ଦିନୁ ଭସ୍ତୁ : 'ଜାତସ୍ୟହି ଧ୍ରୁବୋ ମୃତ୍ୟୁ',
କେତେବେଳେ ଧରିନେବ ଉହାଡ଼ୁ କୁଆଡ଼ୁ ଆସି
ଝିଙ୍କିନେବ ଯମ, କରିଦେବ ସବୁ ସାଙ୍ଗ ଏ ଜୀବନ ଖେଳ ।
ବରଂ ପାଶୋରି ଦେବା, ମନୁ ପୋଛିଦେବା
ମରଣଟା ଜୀବନର ଶେଷ ପରିଣତି ।।

ନିଃସଙ୍ଗ ଜୀବନ ଭଲ,
ଦୂରଗାମୀ ପକ୍ଷେ
ଦୂରତା ସମ୍ବନ୍ଧେ ଜ୍ଞାନ ଆଦୌ ନଥିବା ।
ଜନ୍ମଟାଇ ଖାଲି କ'ଣ ବଡ଼ ?
ଯୌବନ ସ୍ମରଣ ଲାଗି ଆୟୋଜନ କମ୍ପା ?
ନଦୀର ସାଗର ମଧ୍ୟେ ଗୁରୁତ୍ୱ ନଦୀର,
ଯେଉଁପରି
ମାତୃଗର୍ଭ-ଶ୍ମଶାନ ମଝିରେ
ମନୁଷ୍ୟର ମୂଲ୍ୟସିନା ତାର କାର୍ଯ୍ୟ ଯେବେ ।
କାର୍ଯ୍ୟ କାର୍ଯ୍ୟ ବସ୍ତୁରର ହେଲ
ଶ୍ମଶାନରେ ଦେହ ଭସ୍ମପରେ
ଶୁଦ୍ଧ କର୍ମ ସରଳ ଉତ୍ତରୁ ।।
ବେଶୀ ନୁହେଁ ବିନ୍ଦୁମାତ୍ର ଅଶ୍ରୁ ଯଦି ଝରାଇ ପାରିଲ
ତେବେ ଯେଉଁ ଗତାୟୁର ଜୀବନ ସାର୍ଥକ,
ହାହା ରବ ଯଦି ଉଠେ ଲୋକଙ୍କ ମୁଖରୁ
ତେବେ ସେ ଜୀବନ ହେଲା ଧାରହରା ନଈ,
ଖାଲି ବାଲି ଅକାମୀ ସଭିଙ୍କୁ ।।
ମରଣାନ୍ତେ ଜଣା ସିନା ଭଲ ଅବା ମନ୍ଦ
ଆଗରୁ ଅସ୍ଥିର କର୍ମ । ଜନ୍ମଟାକୁ ଯେନ ?
ମୃତ୍ୟୁହୀନ ଏ ଜୀବନ ଅସୀମ କାହାଣୀ ତା'ର
ମରଣ ତ ମାତ୍ର ଏକ ଅଧ୍ୟାୟ ସମାପ୍ତି ।
ଅଧ୍ୟାୟ ଶେଷରେ ସିନା ଭଲ ମନ୍ଦ ଗଳ୍ପର ବସ୍ତୁର
ସେ ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ପଢ଼ିବାକୁ ହେବ
ଅନ୍ୟଥା ସମୀକ୍ଷା ହେବ ଅବାସ୍ତବ, ଅବାନ୍ତର, ନିରର୍ଥକ ମଧ୍ୟ ।

●

(ଝଙ୍କାର- ୭ଶ ବର୍ଷ/୧୦ମ ସଂଖ୍ୟାରୁ ସଂଗୃହୀତ)

# ସାଧନା

—କଳ୍ପନା କୁମାରୀ ସାବତ

କେତେ ସାଧିଲିଣି ଚରଣ ଧରଣି
ପଦେ କଥା କହି ଯାଅ ହେ,
ପଦେ ସୁମଧୁର ବାଣୀ ବୋଲି ମୋତେ
ଦୂରେ ଦୂରେ ଯଦି ଥାଅ ।

ରୂପଟି ଲୁଚାଇ ରଖ ହେ ଯତନେ
ପଛେ ବା ପଡ଼ିବ ଲୋଚନ,
ଅଛୁ ତ ବିଶାଳ ବିଶ୍ୱ-ପରି ପୂରି
ତବ ରମ୍ୟ ରୂପ ମୋହନ ।

ପଦେ ଗୀତ ଗାଇ ଯାଅ ପ୍ରାଣଯନ୍ତ୍ରେ
ଦରଫୁଟ କ୍ଷୁଦ୍ର ରାଗରେ ।
ବିଶ୍ୱଜିତ୍ ତବ ସୁମଧୁର ସ୍ୱରେ
ଶୁଣିବି ମୁଁ ଅନୁରାଗରେ ।

ଖାଲି, ତୁମର ଅଧର ହସଟିକ ଲଗି
ତୁମର ନୟନ ଚାହାଣୀ
ଖାଲି ତୁମର ଅଧରେ ପ୍ରିୟ ଅନୁଭୂତ
ମାଗେ ମୁଁ ଅଧମ ପରାଣୀ ।

ସୁନାର ସଂସାର ରଖ ହେ ତୁମର
ଗଢ଼ିଛି ଆନ ପାଇଁ ଯତନେ,

ଖାଲି, ତୁମର ପଦ୍ମ ସଜକଣ୍ଠ ସୁଧା
ଢଳେ ମାତ୍ର ଦିଅ ଅଧମେ ।

ତୁମ ମଣିହାର, ତୁମ ବର୍ଣ୍ଣେ ଶୂର୍ଯ୍ୟ
ଆଉ କାହା ପାଇଁ ଲେଖ ହେ,
ତୁମ ପାଦ ତଳେ ରହିବା ସକାଶ
ସୃଷ୍ଟିକ ଭୂଇଁ ରଖ ହେ ।

ତୁମର ବିଭୂତି ତମର ଶକତି
ଆଉ କାହାପାଇଁ ବିତର,
ତୁମ ପ୍ରେମ ସୁଧା ଢାଳି ଦିଅ ମୋତେ
ମେଲାଇଛି ହୃଦ ପତର ।

ରଜା, ମହାରଜା କର ହେ କାହାକୁ
ସୁଯଶ ଦିଅ ହେ ଅପାର;
କଙ୍କର ପରସ୍ତେ ରଖିଥାଅ ମୋତେ
ଜଗାଇଣ ତବ ଦୁଆର ।



('କୁନ୍ତଳା କୁମାରୀ ଗ୍ରନ୍ଥାବଳୀ'ରୁ ସଂଗୃହୀତ)

# ଲୋହିତ ବ୍ୟଥା

—କାଳନ୍ଦୀ ଚରଣ ପାଣିଗ୍ରାହୀ

ବଂଶୀ କାନ୍ଦିଗଲା ଦୂର ବିଲ ବନ ପଥେ
ସ୍ୱର ରହିଗଲା ଏ ମୋର ମରମ ଗତେ

ଦୂର ଅତୀତର ଶୃଙ୍ଖଳ ଭାଷା
କି ଗହନ ବ୍ୟଥା ଦୁରନ୍ତ ଦୁରାଶା,

ସନ୍ଧ୍ୟା ସୁନ୍ଦରୀ ସ୍ୱର୍ଣ୍ଣ ମେଘର ରଥେ
ସଜଳ ନୟନେ ଖୁଜୁଁଥିଲା ବନପଥେ ।

ପଉଷ ଶୀତର ନିବିଡ଼ ବେଦନା ପରେ
ନିମିଷେ ବସନ୍ତ ବନ୍ଦୁଥିଲା କେବେ ଥରେ,

କେବେ ଜୋଛନାର ସଲଜ ପରଶେ
ପ୍ରାଣ ଉଠିଥିଲା ପୁଲକି ହରଷେ,

କେବେ କେଉଁ ଦିନ ଗୋଧୂଳି ଆଲୋକ ପରେ
ହଳିଆର ଗୀତ ଭାସି ଆସିଥିଲା ଘରେ ।

କେବେ ନଦୀ କୋଳେ କହି ତା ବ୍ୟଥିତ ବାଣୀ
ରକତ ଚୁମ୍ବନ ରଖିଥିଲା ସନ୍ଧ୍ୟାରାଣୀ

ଏକାକୀ ନାଉରୀ ସଙ୍ଗୀତ ଶୋକେ
ନାବ ବାହୁଥିଲା ଲୋହିତ ଆଲୋକେ,

ଉପରେ ତାହାର ସନ୍ଧ୍ୟା ପରମ ଠାଣି
ତଳେ ଜଳରାଶି-ପୀଡ଼ିତ-ମରମ ବାଣୀ ।

ଫାଟି ପଡ଼ୁଥିଲା ରୋଲସୀ ଅନ୍ତର କାର,
ସେ ବ୍ୟଥା ପରଶେ ତ୍ରିଭୁବନ ନାରଖାର,

ଲୋହିତ ସେ ବ୍ୟଥା ଖସଇ ଏବନେ,
ଅରୁଣ ରଙ୍ଗିଣୀ ଗଗନେ ଗଗନେ,

ସେ ବ୍ୟଥା ଏ ପ୍ରାଣେ ଉଠାଇଛୁ ହାହାକାର
ସକଳ ଅଙ୍ଗେ ମୋ ରକତ ତୁମ୍ଭ ତାର ।

ଅନ୍ତରେ ରକତ ବାହାରେ ରକତ ରାଶି,
ରକତର ଶିଶୁ କାହିଁ ଯିବ ମୁ ଗୋ ଭାସି,

କି ବାରତା ଆସେ କାହିଁ ସେ ଦୂରରେ
କ୍ଷୀଣତର ହୋଇ ମରମେ ପଶରେ,

କି ପୁଲକ ବ୍ୟଥା ପରଶେ ଲାଗେ ସନ୍ତ୍ରାସି
ରଙ୍ଗାଏ ମୋର ସଞ୍ଚିତ ବ୍ୟଥା ରାଶି ।

ସେ କିବା ମୋହର ପ୍ରଥମ ଆଲୋକ କଥା
ଅନନ୍ତ ଯୁଗର ଆଦମ ଏକ ବାରତା,

ପ୍ରାଚୀନତମ ସେ ପ୍ରାଣର ପରଶ
ଅସୀମ କାଳର ଏକ ଇତିହାସ,

ଅତଳୁ ଅତଳେ କାହିଁ ଲୁଚଛୁ ସେ ବ୍ୟଥା
ସନ୍ଧ୍ୟା ଗଗନେ ଶୁଣିଲି ଆଜି ସେ କଥା ।



( 'ସବୁଜ କବିତା'ରୁ ସଂଗୃହୀତ )

# ଆରମ୍ଭ ଗୀତି

—ବୈକୁଣ୍ଠନାଥ ପଟ୍ଟନାୟକ

ଗନ୍ଧ ଯେସନେ ମଳୟ ସମୀରେ ମିଶେ
ତଟିନୀ ଯେସନେ ସାଗରକୁ ଯାଏ ବନ୍ଧୁ,
ଯେସନେ ଜୋଛନା ଶ୍ୟାମ ପ୍ରାନ୍ତରେ ମିଶେ
ତୁମର ପରଶ ମିଶିଯିବ ଆଜ ସନ୍ଧୁ ।

ପିଇବ ସେ ରୂପ କ୍ଷୁବ୍ଧ ଚକୋର ସମ
ଲୁଣ୍ଠିବ ନୟନେ ଅରୁଣଟି ଯହିଁ ଫୁଟେ,
ଜାନ୍ତ ଆଜି ଗୋ ନରଶ ପରଶ ମମ
ଦୂରେ ତୁମ ଆଶେ ସମୀରଣ ସମ ଛୁଟେ ।

ଫେଡ଼ିଦଅ ସନ୍ଧୁ ପରଶ ଦୁଆର ତୋର
ମରମ ଜଡ଼ିତ ଆକୁଳ ନୟନ ଖୋଲି,
ଡାକ ପ୍ରିୟଜନେ, ମୁଁ ନୁହେଁ ପରଶ ସ୍ୱୈର—
ଭାନ୍ତ ଭିକ୍ଷୁ ଯାଏ ମୋର ଗୀତ ବୋଲି ।

ଲଭିଛୁ ଜୀବନେ ଭ୍ରାନ୍ତ ମରମ ପୀଡ଼ା
ରୁଧିର ପ୍ଳୁତ ଯୌବନ ତହୁଁ ଜଣେ,
ତରଙ୍ଗ ଆସିଛୁ କାଳର ବିପୁଳ କ୍ରୀଡ଼ା
ଅମର ହେବାକୁ ତୋର ଅନ୍ତର ଧନେ ।



( 'ସବୁଜ କବିତା'ରୁ ସଂଗୃହୀତ )

# ପ୍ରଳୟ ପ୍ରେରଣା

—ଅନ୍ନଦାଶଙ୍କର ରାୟ

ଅଗ୍ନିକଣା ! ଅଗ୍ନିକଣା !
ଦେହ ଯାପେ ଜାଳ ଦୀପ୍ତ ଶିଖା,
ତୀବ୍ର ତେଜେ ଦହିବ ମୁଁ
ଜଡ଼ତାର ଅନ୍ଧ କୁଜ୍‌ଝଟିକା ।

ଶକ୍ତି ମଦେ କ୍ଷିପ୍ତ କର—
ଶକ୍ତି ପାଇଁ ସର୍ବାଙ୍ଗ ଅଧୀର,
ଆଲୋକ ଆସବ ଦେଇ
କର ମୋତେ ଉନ୍ମାଦ ମଦିର ।

ଝଞ୍ଜା ବାୟୁ ! ଝଞ୍ଜା ବାୟୁ !
ଡାକ ମୋତେ ପ୍ରଳୟ ଆହବେ
ମୃତ, ମୂକ ଧରା ବକ୍ଷେ
ମାତିବ ମୁଁ ସୋଲ୍ଲାସ ତାଣ୍ଡବେ ।

ମୋତେ କର ବଂଶୀ ତବ—
ବଜାଇବ ଭୈରବୀ ରାଗିଣୀ,
ଝଞ୍ଜାଗ୍ନି ! ମୋ ସଙ୍ଗୀତେ
ମିଶୁ ତବ କଣ୍ଠ କିଙ୍କିଣୀ ।

ମୁକ୍ତି ମନ୍ତ୍ରେ ଦୀକ୍ଷା ଦିଅ,
ଦିଅ ମୋତେ ଜ୍ୱଳନ୍ତ ଜୀବନ,

କଣ୍ଠେ ମୋର ବଜ୍ରବାଣୀ,
ନେତ୍ରେ ମୋର ପ୍ରଳୟ ଦାହନ ।

ଅନନ୍ତ ଜୀବନ ମୋରେ
ଅବହେଳେ ଆଣିବ ମରଣେ,
ସମାଜ ମାନବ ନାହିଁ,
ଲୋକମତ ଦଳିବି ଚରଣେ ।

ଝଟିକା ମୁଁ—ବହିଯିବି
ଦେଶ 'ପରେ, ଯୁଗର ଉପରେ,
ଅନଳ ମୁଁ—ଦହିଯିବି
ନର୍କେ, ସ୍ୱର୍ଗେ ଅଜାତରେ ।

ଯେତେ ପାପ, ଯେତେ ମିଥ୍ୟା,
ଯେତେ ମୋହ ଯେତେ ପ୍ରବଞ୍ଚନା,
ଧର୍ମ ନାମେ, ନୀତି ନାମେ,
ଜାତି ନାମେ ଯେତେ ଆବର୍ଜନା ।

ବୈଷମ୍ୟର ଭେଦ ରେଖା,
ଭଣ୍ଡତାର ଯେତେ ଆଚ୍ଛାଦନ,
ଦୁର୍ବଳର ହାହାକାର,
ପୀଡ଼ିତର ମରମ ବେଦନ—

ବନ୍ଧ୍ୟ ପଦେ ଧରଣୀର
ଦୁଃଖ ଶୋକ ଭରା ଅର୍ଘ୍ୟ ଥାଳି—
ନିଷ୍ଠୁର ନିର୍ମମ ମୁହିଁ,
ନିର୍ବିକାରେ ସବୁ ଦେବି ଜାଳି ।

ଛିନ୍ନ କରି ଧ୍ୱଂସ କରି
ଯେତେ ବାଧା ଯେତେକ ବନ୍ଧନ,

ମାନବ କଳଙ୍କ ଘରେ
ରଚିବି ମୁଁ ପ୍ରଳୟ ଇନ୍ଧନ ।

ଖଣ୍ଡ ଖଣ୍ଡ କରି ସବୁ
ଭଗ୍ନ କରି ଚୂର୍ଣ୍ଣ କରି କ୍ଷଣେ
ନିକ୍ଷେପିବି ବହ୍ନି ହୃଦେ
ବସୁନ୍ଧର ଗୁପ୍ତ ଗୁହା କୋଣେ ।

ଏହି ଭଗ୍ନ ଅବଶେଷେ
ଉପରେ ମୁଁ ରଚିବି ନନ୍ଦନ
ମର୍ତ୍ତ୍ୟରେ ଅମରାବତୀ
ଜଡ଼ ଦେହେ ଜୀବନ ସ୍ପନ୍ଦନ ।



( ‘ସବୁଜ କବିତା’ରୁ ସଂଗୃହୀତ )

# ମହାନଦୀରେ ଜ୍ୟୋତ୍ସ୍ନା ବିହାର

—ଡକ୍ଟର ମାୟାଧର ମାନସିଂହ

ଶିଳାଗୃହ ଅନ୍ଧକାରବାସୀ ମୁଁ ଜନନି !
ଉତ୍କଳ ! ନଥିଲି ଜାଣି, ଅଛି ଲୋ ତୋ ପୁରେ
ଏମନ୍ତ ରୂପର ଲୀଳା, ନବାହୁଁ ତରଣୀ
ଆଜି ଏ ଜ୍ୟୋତ୍ସ୍ନାରେ ନୀଳ ମହାନଦୀ ପୁରେ । ୧ ।

ଅହା କି ବିପୁଳ ଶୋଭା ଭାସେ ଆଖି ଆଗେ
କେମନ୍ତେ ବର୍ଣ୍ଣିବ ମୋର ମୁଗଧ ଅନୁଭବ,
ଚକ୍ଷୁ ମୋର ଅନ୍ଧ ହୁଏ ଜ୍ୟୋଛନା ପରାଗେ;
ବାଣୀ ମୋର ନାହିଁ ଫୁଟେ, ମାନେ ପରାଭବ । ୨ ।

ଧବଳ—ଉତ୍ତରୀ ସମ ରଜନୀ ବଧୂର
ଜ୍ୟୋଛନା ବ୍ୟାପିଛି ଦୂର ଦିଗନ୍ତ ଲାଗି,
ତଳେ ତାର ଏ ଧରଣୀ ପ୍ରକୃତି ମଧୁର
ହୋଇଛି ମଧୁରରେ ତା ପରଶେ ଜାଗି । ୩ ।

ଆକାଶର ଖଣ୍ଡସମ ମହାନଦୀ ବାରି
ଚନ୍ଦ୍ରିକା ଚୁମ୍ବନ ପାଇ ଧବଳ ଚପଳା
ତରଳ ମୁକୁର ଅବା ଦେଇଛି କେ ପାରି
ଦେଖିବେ ବଦନ ନଭ—ସୀମନ୍ତିନୀ ଦଳ । ୪ ।

ଦୁଇକୂଳେ ବୃକ୍ଷରେଖା ଜ୍ୟୋଛନା ଧଉତ
ପାଣ୍ଡୁର ଆଲୋକେ ଧରି ତନ୍ଦ୍ରାଳସ ଶିରୀ
ସ୍ୱପ୍ନପୁରୀ କରେ ସୃଷ୍ଟି; ଅଳସ ମରୁତ
ଜ୍ୟୋଛନା-ମଦିରା-ମତ୍ତ ବହେ ଧିରି ଧିରି । ୫ ।

ଅଙ୍ଗେ ଘେନି ମହାନଦୀ-ଶୀକର ନିଷେକ
ଦୂରେ ଓ ନିକଟେ ଘନେ ନଦୀପଠା ଶତ –
ଶରବଣ ଶ୍ୟାମଛବି, ଦୀର୍ଘୀକୃତ ବେକ—
ବିରହୀ ଚକୋର ଯହିଁ କାନ୍ଦେ ଅବିରତ । ୬ ।

ଦୂରବାହୀ ନାଉରୀର ସରଳ ସଙ୍ଗୀତ
ପବନେ ଆସଇ ଭାସି ନଦୀ-ବକ୍ଷ ପରେ
କ୍ଷେପଣୀ ଆଘାତେ ଦେଖ ଚନ୍ଦ୍ରିକା-ରଞ୍ଜିତ—
ନଦୀବାରି ଲକ୍ଷ ରୌପ୍ୟ ପୁଷ୍ପ ସୃଷ୍ଟି କରେ । ୭ ।

ପଶ୍ଚାତେ ପ୍ରସାର ନୀଳ-ଶୁଭ୍ର ବାଲି ରାଶି
ମିଶାଇ ଆକାଶ ତଳେ, ସମ୍ମୁଖେ ମୋହର,
ଗମ୍ଭୀର ସୁନ୍ଦର ଗିରିମାଳା ଉଠେ ଭାସି
ଚନ୍ଦ୍ରିକା-ଚନ୍ଦନେ ଚର୍ଚ୍ଚି ନୀଳ କଳେବର । ୮ ।

ଉଠିଛୁ ଶିଖର-ମାଳା-ପଶ୍ଚାତୁଁ ଆକାଶ
ସନ୍ନ୍ୟାସିନୀ ମୁଖସମ ପ୍ରଶାନ୍ତ ଧବଳ
ତା ତଳେ ରଜନୀ ବଧୂ ଚନ୍ଦ୍ରିକାର ବାସ
ଉଡ଼ାଇ ଧରଣୀ କରେ ପରଶେ ଉତଳ । ୯ ।

ଏ ବିରାଟ ଚନ୍ଦ୍ରାଲୋକେ ଅନ୍ତରେ ମୁଁ ଦୀନ
ମୁଗ୍ଧ ସମ ରହେ ବୁଡ଼ି ମହା ମହିମାରେ
ଭାବଇବା ହୋଇ ଏହି ଜ୍ୟୋତ୍ସ୍ନାରେ ପ୍ରଲୀନ
ଭୋଗନ୍ତି ଯେ ସୁଧା ହରେ ଆଜ ଏତେ ଧାରେ । ୧୦ ।

●

(ମାନସିଂହ ଗ୍ରନ୍ଥାବଳୀ ।
ମହାନଦୀରେ ଜ୍ୟୋତ୍ସ୍ନା ବିହାରର ଅଂଶ ବିଶେଷ)

# କରୁଣା ଧାର

—ନିର୍ମଳା ଦେବୀ

ଏଇ ସାୟାହ୍ନର ଝିଲମିଲ ଅବକାଶେ
ନିଜ ପାଇଁ ତାର ନିଜର କରୁଣା ରସେ
ଅଶ୍ରୁ-ସାଗରେ ସନ୍ତରି ବାର ବାର
ଅସହ୍ୟ ଦୁଃଖ ସହିଲ ଆତ୍ମା ତାର ।

କେତେ ଯେ ଶୁଣିଲ ରୂଢ଼ ନୀରସ ବାଣୀ
କେତେ ଯେ ଭ୍ରୁକୁଟି କୁଟିଳ ନୟନ ଠାଣି
ବହ୍ନିରୁ ବଳି ଘୋର ଅପମାନ ଜ୍ୱାଳା
ଭକ୍ତି ଆହ୍ୱବେ ଆଜି ସେ ସର୍ବଂସହା ।

ହାସ୍ୟ କଳିକା ବିକଶିବା ବେଳେ ତାର
ଛିନ୍ନ କରି ସେ ଫିଙ୍ଗିଲ ବାର ବାର
"ନିର୍ବିବାଦେ ଯେ ସହିଲ ନିର୍ବିଘ୍ନର
ତାହା ପାଇଁ ଆଜି ବହଇ କରୁଣା ଧାର ।



('ସୀମାନ୍ତେ'ରୁ ସଂଗୃହୀତ)

# ପ୍ରକାଶ

—ଶ୍ରୀ ଅନନ୍ତ ପଟ୍ଟନାୟକ

ଖୋଲି ଖୋଲି ଦେଲି ନିଜକୁ ଯେତେ ମୁଁ
ଆଲୁଅ ପାଖୁଡ଼ା ପରି,
ବାହାର ପଡ଼ିଲି ଏକା,
ବୁଜି ବୁଜି ଗଲି ସେଠିକି କାହିଁକି
ଆଘାତୁ ଆଘାତେ ଭିଜା ଆଖିପତା ଝଳି;
ନିଜଠି ରହିଲି ଲେଖା ।

ନିଜର ହୃଦୟେ ନିଜକୁ ରଖେ ମୁଁ
କେଉଁ ଝପରର ଗାଣ୍ଠ
ବସି ବସି ଗୁଣେ ପାଠ ବେଢ଼ଣର ବନ୍ଦୀଶାଳା ମୁଁ
ଯୁଗ-ଗଣିକାର ପଛେ ପଛେ ଯତେ
ମୁରୁଜ ବଜାଇ ଘାଟ ।

ଜାଣେ ମୁଁ ସିଝିବ ନିମିଷ ପରେରେ
ହେବ ମୁ ଉତ୍ତୁଙ୍ଗିଏ ।
ସୂଚନା ହୋଇ ମୁଁ ସ୍ନେହର ଶବ୍ଦ,
ସାଜପୁଜି ହୋଇ ଉଡ଼ୁଥିବ କେତେ
କେଉଁ ସୁଜନର ତଟେ
ସେଇ କି ମୋହର ସାର୍ଥକ ପ୍ରୀତି ଖିଏ !
ବୁଜି ବୁଜି ହୋଇ ସେଇଥିପାଇଁକି
ନିଜର ଭିତରେ ଜାଏ ?

●

(ଝଙ୍କାର—୧୧ଶ ବର୍ଷ/୮ମ ସଂଖ୍ୟାରୁ ସଂଗୃହୀତ)

# ବନ୍ଧୁ, ସାବଧାନ

—ଶ୍ରୀ ରାଧାମୋହନ ଗଡ଼ନାୟକ

—୧—

ବିଷର ଜଗତେ ମୁହିଁ, ଦେଖିଅଛୁ
ଜୀବନର ମଧୁ !
ମଧୁରାଜ୍ୟେ ବିଷ ତୁମେ କେଉଁପରି
ସୃଜିଅଛ ବନ୍ଧୁ ? .
ପ୍ରୟୋଜନ ନାହିଁ ଆଉ, ଶେଷ ଏବେ
ମଦର ଅଧ୍ୟାୟ,
ସେଥିପାଇଁ ସୁଚତୁର ଅସ୍ତ୍ର ତୋଳ
ନେଇଚ ବିଦାୟ !

—୨—

ତୁମର ନାଆଁରେ ବନ୍ଧୁ ମୁଁ ଲେଖିଚି
କଳଙ୍କ-କବିତା
କେମିତି ବିଶ୍ୱାସ କଲ ? ବୁଝିଲ ନ
ସତ୍ୟ ଅବା ମିଥ୍ୟା ?
ଯା'ଲଗି ସଳତା ପ୍ରାଏ ବହ୍ନି ଦାହେ
କାଳଚ ଜୀବନ,
ତା ନାଆଁରେ ମୁଁ କେମିତି କରଥାନ୍ତି
ବନ୍ଧ ବିଦୂଷଣ ?

— ୩ —

ନ ଆଖିରେ କେଉଁପରି ଦେଖିଚ ମୁଁ
ଦିଗନ୍ତ, ଦୁନିଆଁ,
ବନ୍ଧୁ ଲାଗି କେଉଁପରି ସ୍ୱଚ୍ଛ ମୋର
ସ୍ନେହାଶ୍ରୁର ଧୁଆ,
ତୁମେ ବେଶ୍ ଜାଣ ବନ୍ଧୁ, ମମତାରେ
ଯେଉଁଥି ସକାଶେ
ବହୁତ କବିତା ତୁମେ ବହୁବାର
ଲେଖିଚ ମୋ ପାଶେ ।

— ୪ —

ପୃଷ୍ଠଭାଗେ ବହିଯାରେ ହେ ସୁହୃଦ
ଗରୁଡ଼ ସମାନ
ଗୁରୁ ଗଉରବେ ତୁମେ ମଣୁଅଛ
ଅତି ଭାଗ୍ୟବାନ ।
ଶେଷ ମୁହିଁ, ଯେବେ ତାରେ ମୋର ହୋଡ଼େ
ମୋର ଫଣା ତଳେ,
ଜୀବନର ଅଭିମାନେ ଦୃପ୍ତ ମୁହିଁ
ଜନ ଜଗତରେ ।

— ୫ —

ତୁମେ ବେଶ୍ ବପୁଷ୍ମାନ୍ ସାପପରି
ମୁଁ ଏକ କ୍ଷୀଣାଙ୍ଗ ।
ପଥେ ପଥେ ତୁମଲାଗି ଅଯାଚିତ
ଝରୁଛି ସୌଭାଗ୍ୟ ।

ନିୟମ ଶୃଙ୍ଖଳେ ବନ୍ଧା ସମତଳ
ଭ୍ରମ ପଥ ଭୁଲି,
ବନ୍ଧୁର ମୋ ସରଣୀରେ ଉଚ୍ଛୃଙ୍ଖଳ
ଧୂମକେତୁ ମୂର୍ତ୍ତି ।

—୭—

ବୈଷମ୍ୟର ପୃଷ୍ଠଭୂମେ ମୁଁ ତୁମର
ଅଲୌକିକ ବନ୍ଧୁ,
ଗରଳ ଦେଖିଲ କିଆଁ ? ଦେଖିଲନି
ଏକତ୍ୱର ମଧୁ ?
କେଉଁ ଶିବିରରୁ ପୁଣି ଏ ଆଡ଼କୁ
ମାରୁଅଛ ବାଣ ?
ଏ ତୂଣୀରେ ଅଛୁ ତାର ପ୍ରତିବାଣ
ବନ୍ଧୁ ସାବଧାନ ।



(ଝଙ୍କାର—୩୨ଶ ବର୍ଷ ୭ମ ସଂଖ୍ୟାରୁ ସଂଗୃହୀତ)

# ଅନ୍ଧକାରେ

—ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ

ବିରାଟ ବିପୁଳ ନଭଶ୍ଚୁମ୍ବୀ ଉତ୍ତୁଙ୍ଗ ଏ ଗିରିମାଳା ମେଳେ,
କିଏ ଅଛ ? କିଏ ଅଛ ? ମୋ ନୟନ ପ୍ରତିବନ୍ଧ ଲଙ୍ଘ
ତୁମରେ କି ଛୁଁଏ ନାହିଁ ଥିଲେ ?
ଆସ ତମେ ଆସ ଆସ ଆପୁନ କାହିଁକି ?
ମତେ କ'ଣ ? ପାରୁନାହଁ ଦେଖି ?
କାହିଁକି କହୁନ କଥା ନେଇ ବେକ ଟେକ ?
ତୁମେ ଖାଲି ରହିଥିବ ବିଜନତା ମହାମୂର୍ତ୍ତି ଧରି ?
ମୁହିଁ ଏଥି ଠିଆ ହୋଇ ହୋଇ,
ସ୍ଖଳିଯିବ ମୋ ଦୃଷ୍ଟି-ପଥ ଅନୁସରି ?
ଓଠେ ମୋର ଫୁଟିବନି ହସ ?
ବକ୍ଷେ ମୋର ଜାଗିବନି ନବ ଉନ୍ମାଦନା ?
ଜୀବନର ପ୍ରତିରନ୍ଧ୍ରେ ଜାଗିବନି ପ୍ରଦୀପ୍ତ ଚେତନା ?
ଉଠିବନି ? ପଡ଼ିଥିବ ? ପଡ଼ି ପଡ଼ି ସ୍ଖଳିଯିବ କାହିଁ ?
କିଏ ତୁମେ ବିରାଟ ସ୍ୱରୂପ ରହିଅଛ ସବୁଜ ଏ ବନ କୁନ୍ତଦେହେ
ଆସିବନି ଲବେ ମୋହ ପାଇଁ ?
ସୂର୍ଯ୍ୟ ଯାଏ ପଶ୍ଚିମ ଆକାଶେ ବୁଡ଼ି
ଯିଏ ଯାହିଁ ପାନ୍ଥଜନ ଆପଣାର ନୀଡ଼େ ଗଲେଣି ବାହୁଡ଼ି
ମାଡ଼ିଆସେ ଦୂର ଦିଗ୍‌ବଳୟ ତଳୁ ଘନକୃଷ୍ଣ ମହା ଅନ୍ଧକାର,
ମୁଁ କିନ୍ତୁ ପାରୁନି ଯାଇ ହୋଇଅଛି ଠିଆ,
ନେତ୍ରପ୍ରାନ୍ତୁ ବୋହି ଆସେ ଉଷ୍ଣ ଅଶ୍ରୁଧାର ।
ପାରୁନି ମୁଁ ଯାଇ, କୁଆଡ଼େ ମୁଁ ଯିବି,

କାହିଁ ମୋର ଆଶା ବା ଆଶ୍ରୟ ?
ତୁମେ କେହି ବୁଝିବନି ମୋତେ ?
ରହିଥିବ ହୋଇ ନତ ଆକୁଳ ଅଥୟ ?
କିଏ ସେ ଆସୁଚ ତମେ କାହିଁ ମତେ କଛୁ ଦଶୁନାହିଁ ?
ଏଇ ମହା ଅନ୍ଧକାରେ କୁଆଡ଼େ ମୁଁ ଯିବି କାହି ପାଇଁ ?
ଆସ ! ଆସ ! ଆସ ତମେ ହେ ଉତ୍ତୁଙ୍ଗ ଗିରି ବନ-କୁଞ୍ଜ-ଲତା !
କେହି ତୁମେ ବୁଝିବନି ? ଏଇ ମହାଜୀବନର ବ୍ୟଥା ?
ମତେ କ'ଣ ବୁଝିବାକୁ ତମର ହୃଦୟ ହୁଏ ନାହିଁ ଆକୁଳ ଅଥୟ ?
ଦେବା ନାହିଁ ଦେବ ନାହିଁ ମତେ ?
ମୋ ଦରିଦ୍ର ଜୀବନର ଯେ ଟିକକ ଲୋଡ଼ା ?
ଫେରିଯିବ ? ଏଇ ମହା ଅନ୍ଧକାରେ ?
କେଉଁ ଆଡ଼େ ଯିବି ଅବା କାହିଁ ?
ମୋହର ପାଇଁ କେହି କ'ଣ ନାହିଁ ? ? ?



(ଝଙ୍କାର—୧୧ଶ ବର୍ଷ/୧୨ଶ ସଂଖ୍ୟାରୁ ସଂଗୃହୀତ)

# ସନଦ

—ଡକ୍ଟର କୁଞ୍ଜବିହାରୀ ଦାଶ

କଏଦୀ ଫେରୁଚ
ଭରବାହୀ ଅଶ୍ୱ
ଯେପରି ଗାଡ଼ିରୁ
ମୁକ୍ତକ୍ଲାନ୍ତ ସୈନ୍ୟ
ଯେପରି ଧାଡ଼ିରୁ ।
କାହାର ଧମକେ ନାଚେ
ଗୋଧୂଳିର ରକ୍ତପାସ୍ତି ଅଧରରେ
ଶିଶୁ ଚନ୍ଦ୍ର ଓଷ୍ଠପଟେ ଥରେ
ଧୂଳା ଧୂଳା ମେଘ
ଚିରା ଫାଟିଲା କାଗଜ ପରି
ନୀଳ ମରୁଭୂମିରେ ଉଡ଼େ
ଜୀବନର ଅବ୍ୟବସ୍ଥାରେ
ବିରକ୍ତ ସୂର୍ଯ୍ୟ ବୁଡ଼େ ।
ପଥ ଚଳୁର ପାଣ୍ଡୁର ପଟେ ପଟେ
ନଗରର କ୍ଲାନ୍ତ ଜନେ
ରୋଗୀ ଉପରେ ବିୟୋଗ ଦୁଃଖ ପରି
ସିନେମା ସଙ୍ଗୀତ, ବିଜ୍ଞାନ, ଟ୍ରକ୍ ଧୂଳି
କ୍ଷୋଭ, ବିରକ୍ତି, ଅବସନ୍ନତା
ଦୁଶ୍ଚିନ୍ତାର ନିର୍ମମାରୁ ଜାତ
ମଣି ପରି
ବେଢ଼ୁଛନ୍ତି ତାର ଅଗଣିତ କ୍ଷତରେ
ଉଡ଼ାଡ଼ ନାହିଁ
ନିଜ ପ୍ରତି ନିଷ୍ଠୁର, ନିର୍ଦ୍ଦୟ ପ୍ରେମହୀନ

ଦୁଇ କ୍ଷୀଣ ଖଦ୍ୟୋତରେ
ଦେଖେ ସେ
ଜହ୍ନରତ୍ନ ଦୋକାନରେ ଆଲୋକ ସଜ୍ଜା
ସ୍ୱାସ୍ଥ୍ୟ, ଶ୍ରୀ, ସମୃଦ୍ଧି
ଦୈନ୍ୟ, ରୋଗ, ଅପମାନେ
ନିଜକୁ ଆହୁରି ଦଣ୍ଡିବାକୁ
ରୋଗଶଯ୍ୟାରେ ଲଣ୍ଡି ରହିବାକୁ
ଲୋଭ ହୁଏ
ମରିବାର ପ୍ରେରଣାରେ ଆସେ ଶୀତ
କଂଗୁ ଅଦ୍ଭୁତ ମଣିଷର ଚିତ୍ତ
ଅବଚେତନ ଶକ୍ତି
ସହିଷ୍ଣୁତା
ପୃଥିବୀର ବୃନ୍ତରେ ଫୁଟି ରହିଥିବା ବାସନା
ନୂଆ ରଙ୍ଗର ମନକୁ ରଙ୍ଗେଇ ପାରିବାର କ୍ଷମତା
ଗୋଧୂଳିର ଶେଷ ଅବିର ଝରା
ଦେବଦାରୁ ଧାଡ଼ିରେ
ବାଦୁଡ଼ିର ଭିଡ଼
ଅନୁଭବେ ନୀଡ଼
ମଧୁର ଦୁଷ୍ଟାମି କୋଳାହଳେ ଚଞ୍ଚଳ, ଅସ୍ଥିର
ରୁଷ୍ଟ କ୍ଷୋଭ ଅଭିଯୋଗ ଇତ୍ୟାଦିର
ଅନୁସନ୍ଧାନ କରେ ସେ
ସହସ୍ର ନାଲିସିର ମୁଖ୍ୟ ବକ୍ତାରଙ୍କ
କର୍ଣ୍ଣଧାର
ସେ ହିଁଏ ଧାସ୍ତ
ବାଞ୍ଛିବାର ଦାସ୍ତ
ଏଇ ତାର ଶ୍ରେଷ୍ଠ ସନ୍ଧାନ ।

●

( ଝଙ୍କାର—୧୯ଶ ବର୍ଷ—୩ୟ ସଂଖ୍ୟାରୁ ସଂଗୃହୀତ )

# ଓଡ଼ିଶା

—ସଚ୍ଚିଦାନନ୍ଦ ରାଉତରାୟ

ମୁଁ ଆଂକେଚ ନକ୍ସ ତାର କେତେ ଯେ ଦିନରୁ
ସଫେଦ୍ ଚକ୍‌ରେ ପୁଣି ସ୍କୁଲ ବ୍ଲାକ୍‌ବୋର୍ଡେ ।
ମୁଁ କରିଚ ମୁଖସ୍ଥ ତା' ସୀମା କ୍ଷେତ୍ରଫଳ
ଲୋକ ସଂଖ୍ୟା, ଜିଲ୍ଲା ଓ ସହର ।
ଏବଂ ଛ ଛ'ଟା ମୁଖ୍ୟ ମନ୍ତ୍ରୀ ନାମ ।
ଏବଂ କିଛୁ ମୃତ ଓ ଜୀବିତ ଲୋକଙ୍କ ଠିକଣା
ମୁଁ ଜନ୍ମେ ଓଡ଼ିଆ ଗଳିଦନୁ ଷୋଳ ଅଣା ।
ମୁଁ ଦେଇଚ ଦସ୍ତଖତ ସାଦା କାଗଜରେ
ସ୍ତୁ ଇସ୍ପାତ କାରଖାନା ଶୀଘ୍ର ହେଉ ବୋଲି ।
ମୁଁ କାନ୍ଦିଚ ବାନ୍ଧୁନ ତା ବିଚ୍ଛିନ୍ନ ଅଞ୍ଚଳ,
ଗଂଗାଠୁ ଯା ଥିଲା ଗୋଦାବରୀ ।
ଏବଂ ମା ପେଟରେ ଥିଲି ବେଳେ ଶୁଣିଥିଲି ପିତାଙ୍କ ମୁଁହରେ
ଏଠି କାହ୍ନୁ ହେଉଥିଲା ତୋଳା, ସମୁଦ୍ର ପିଠିରେ ସୂର୍ଯ୍ୟଙ୍କ ଦେଉଳ ।
ପୁଣି, ଜନ୍ମ ହେବା ଚାରି ବର୍ଷ ପରେ ଥିଲି ଶୁଣି
ମାମୁଁ କହୁଥିଲେ
କେବେଠୁ ତା ଭାଂଗି ଗଲାଣି ।।

ମୁଁ ଜଣେ ଓଡ଼ିଆ, ଶତକଡ଼ା ଅନେଶୋତ ଭାଗ ।
ଏଣୁ ଏଠି ହୋଇପାରେ ଅକ୍ଲେଶରେ ଠିଆ
ନିଜ ଗୋଡ଼େ ମୁଁ ଏକ ଗୋଡ଼ିଆ,
ନିଜସ୍ୱ ମାଟିରେ ।

ଏବଂ ଟେକ ଅନ୍ୟ ଗୋଡ଼ ଊର୍ଦ୍ଧ୍ୱ ଆକାଶକୁ
ମାଗିପାରେ ଭିକ୍ଷା
ତିନି ପାଦ ଭୂଇଁ, ତିନି ଲୋକ ଯାକୁ,
ସ୍ୱର୍ଗ, ମର୍ତ୍ତ୍ୟ, ଓ ପାତାଳ ବାମନ ପରିକା ।
ଏବଂ ପୁଣି ଶିକ୍ଷା ଭଡ଼ା କରି
କରିପାରେ ଏ ମୁଣ୍ଡ଼ୁ ସେ ମୁଣ୍ଡ଼ୁ ସହର ଶିଫର,
ଅଧ ଖର୍ଚ୍ଚବେଳେ ॥

ମୁଁ କହେ ଓଡ଼ିଆ ଖାଁଟି ନଚୁଡ଼ା, ନଗ୍ରୋଲା ।
ଶବ୍ଦ ଶେଷ ସ୍ୱରବର୍ଣ୍ଣ ମାନ
ଜାଣି ଶୁଣି ଦୀର୍ଘ କରି କରେ ଉଚ୍ଚାରଣ ।
(ଯେତେ ପାରେ ହଲଂତକୁ କରେ ମୁଁ ବର୍ଜନ )
ପଶିଗଲେ ଯଦି କେବେ ଇଂରାଜୀ, ମୁଁ କରେ ତା ତର୍ଜମା
ସଂଗେ ସଂଗେ ଓଡ଼ିଆରେ କହେ, 'ଗୃହେ କ୍ଷମା' ।
ଯୋଡ଼େ ଏକ 'ମାନେ' ଅଥବା 'ଅର୍ଥାତ୍' ।
ମୁଁ କହେ ଓଡ଼ିଆ ଭଲ କରି ମେହନତ ॥

ମୁଁ ଜଣେ ଓଡ଼ିଆ, ଶତକଡ଼ା ଶହେ
ପୈତୃକ ମାଟିରେ ମୋର ବିନା ପରବାସ୍ତେ
ମୁଁ ଯେ ବଢ଼େ, ମୁଁ ଇ ଛିଡ଼େ, ପୁଣି ବଢ଼େ
ଭଗ ହୁଂକା ମରି, ନିଧାର୍ଯ୍ୟ ନିଷ୍ଟସ୍ତେ ।
ଯଦିଚ ମୁଁ ଅଜାଣତେ ତାଙ୍କ ହୋଇପଡ଼େ
ବେଳେ ବେଳେ ଉଡ଼ୁଙ୍କର ସାପର କାତରେ ॥

ମୁଁ ଏଠାରେ ଭ୍ରମୁ ଗୃଲେ ଉଦ୍ଭ ଉଦ୍ଭ ରଡ଼ି ନଆଁ ଗାଡ଼େ
ବେହୋସ କାଲଶିପରି । ମାତ୍ର ଯେବେ ଭାବେ ମୁହିଁ କପରି ଦଉଡ଼େ
ଜତଲ୍ ନଆଁରେ, ଜଳପା ମୋ ଯାଏ ଜଳି ମୋଡ଼ି ।

ହଠାତ୍ ତେଲୁଣୀ ପୋକ ଶୁବେ ଯେବେ ତା ସହସ୍ର ପାଦ
କପଟ ଗୃଳୁଚି ପିଏ, ଗଢ ତାର ହୁଏ ଯଥା ବନ୍ଦ ॥

ମୁଁ କହେ ଓଡ଼ିଆ ଖାଣ୍ଟି, ତାଳବ୍ୟ 'ଶ' ଯ-ଫଳା ଦେଇ ।
ମୂର୍ଦ୍ଧନ୍ୟକୁ ଘୃଣି ଧରି, ଦନ୍ତ୍ୟବର୍ଣ୍ଣ ଦାନ୍ତକୁ ଚକଟି ।
ମୁଁ ବୁଲେ ଏ ବାଲି ଗରଡ଼ାରେ ଖାଲି ଝୁଂଟି ଝୁଂଟି
କାଦୁଅ ପଂକରେ, ଚରି, ଘଷି ଘଷି ଚଟି ।
(ଶୂନ୍ୟ ମଂଚ ତଳେ ମୁଁ ସେ ବୁଲାଏ ବନାଟି ।)
ଏବଂ ରଥ ଯାତ୍ରା ଦିନ ଯୋଡ଼ି ନେତକୁ ହଲଇ
ମୁଁ ଗାଏ ଜାହ୍ନକ ଗୀତ ଶିର-ଜନା ନାଇ ।
ଶେଷରେ ଘରକୁ ଫେରେ ତୋଳ ମାମୁକୋଳ
ବାଟରେ, ମୋ ଭରି କହୁ ଅଂଟି ।
ମୁଁ କହେ ଓଡ଼ିଆ ମୋର ଖୋଲିବା ପାଟି,
ମୁଁ ଓଡ଼ିଆ କରେଲା ଓ ଖାଂଟି ॥



( ନବରବି—ପ୍ରଥମ ବର୍ଷ/ଷଷ୍ଠ ସଂଖ୍ୟାରୁ ସଂଗୃହୀତ )

# ସୀମାନ୍ତରେ ବର୍ଷା

—ଶ୍ରୀ ଜ୍ଞାନୀନ୍ଦ୍ର ବର୍ମ

ଚେରାପୁଞ୍ଜି ପାହାଡ଼ର ଅନ୍ତର ପଛକୁ
ସୁବନ୍‌ଶିରି ଲଙ୍ଗଜୁର ପାଖକୁ ପାଖକୁ
ସେ ପାଖରେ ଲଦ୍ଦାଖର ପାଏ
ପୂର୍ବୋତ୍ତରର ସୀମାନ୍ତରେ ବର୍ଷା ଆସିଅଛି
ନୀଳ ବର୍ଷା ନୀଳ ମେଘ ତଳେ ।

ଇମ୍ଫାଲର ଶର ନାଲି ନାଲି ତମ୍ବାର ସେ ଡାଲ ।
ଧଳା ଧଳା ପାହାଡ଼ର ବରଫ ମୁଣ୍ଡାରେ
ଏବେ ଖାଲି କୁଣ୍ଡା ଝାଡ଼ୁଅଛି ।
ଶୁଣି ନାହିଁ ବଙ୍ଗ ଆଉ ଆରବ ସାଗର
ଶୁଣି ପାଇଅଛି ଯନ୍ଦ ପଦ୍ମା ଓ ମେଘନା,
ଇଲିଶ ମାଛର ଦାମ୍ ବଢ଼ିଅଛି ଭାରି ।
ସେଥିପାଇଁ ସୀମାନ୍ତରେ ବର୍ଷା ଆୟୋଜନ ·
ଦହଜାର ବର୍ଷପରେ ହେଉଛି କି ଆଜି !
ବ୍ରହ୍ମପୁତ୍ର ବନ୍ୟା ମାଡ଼ି ଆସି
ମତ୍ସ୍ୟକନ୍ୟା ଆଣିଥିଲା ଉଠାଇ ସେ ଥରେ,
ସୁନା ଆଉ ନଦା ନଦା ରୂପା ଦେହ ଧରି
ସେ କନ୍ୟା ଶୁଖାଉଥିଲା
ଧାନ ତଳେ ଖୋଲି ତାର କଳା କଳା କେଶ
ପାଇଛ କି ସେ ସମ୍ବାଦ ଗୋଡ଼ି ମରୁଭୂମି ?
କରିଛ କି ସ୍ଫୁଟେନ୍‌ର ଇଲାବୃତ୍ତେ ଯାଇ ଇନ୍ଦ୍ର ଆରାଧନା ?

ବନ୍ୟାରେ ଭାସିବ ପୃଥ୍ୱୀ
ଜନ୍ୟାସିବ ହିମବନ୍ତ ଟପି ।
ଛତାକାଠି ମସ୍ତମନ୍ତ୍ର ଦ ଦ ଘଇସାରେ
ଡାକିଯାଏ ରାସ୍ତାରେ ହକର ।
କୁମାରକାଠାରେ ଖୋଲା ଛତା କାରଖାନା
ଆଉ ଯେତେ ଭଙ୍ଗାଫୁଟା ଛିଣ୍ଡାଛତା ଅ...
ମସ୍ତମନ୍ତ୍ର ଶୀଘ୍ର କରାଇନଅ ।
ନୀଳ ବର୍ଷା ଲାଲ ମେଘ ତଳେ ।
ଇସ୍ପାତର ଶର ଆଉ ନାଲି ନାଲି...ତମ୍ବାର ସେ ଢାଲ
ଅରଣ୍ୟ ତପୋବନ ତଳେ କେ ବାବାଜି ଭ୍ରାନ୍ତ ମୃଗଛାଲ ।
ହେଇ ଦେଖ, ଧଳା ଧଳା ପାହାଡ଼ର ବରଫ ମୁଣ୍ଡାରେ
କୁଣ୍ଡା ଝଡ଼ା ଗୁଡ଼ି ମେଘ ବର୍ଷା ପାଳୁଛି ।
ଆଯାମର ରାଇଫଲ ବାହୁନୀ ମାଡ଼ିଆସୁଲେ ଆଗକୁ ଆଗକୁ ।
ଗୌହାଟୀର ଗଜକୁଟଣ୍ଡ ପାଣିମାପ ଉଠେ
ପୂର୍ବୋତ୍ତର ସୀମାନ୍ତରେ ବର୍ଷା ଆସିଅଛି ।



(ଝଙ୍କାର—୧୦ ଶ ବର୍ଷ/୬ଷ୍ଠ ସଂଖ୍ୟାରୁ ସଂଗୃହୀତ)

# ଜୟା

—ଶ୍ରୀ ବିନୋଦଚନ୍ଦ୍ର ନାୟକ

ଏ ମୋର ଇଚ୍ଛା ବି ସ୍ୱର୍ଗଜୟୀ
ଅପରିସୀମ ପ୍ରେମ ସ୍ନେହ ବି !
ଅଥଚ ପ୍ରାଣରେ ଧୂ ଧୂ ବାଲୁଚର
ଚକ୍ରବାୟୁ ଯେ
ସୂର୍ଯ୍ୟଦାହ
ତଥାପି ଫୁଟେ ମନ
ରଙ୍ଗିନ କରବୀ ।

ତେବେ ବି ବାଂଛିତ ଶାନ୍ତି କିଛି;
ପ୍ରତ୍ୟାଶିତ ଜୀବନେ ସେ ଟିକି
ଯଦିଓ ତୃଷ୍ଣାର ନିଃସୀମ ପାରାବାର
କଲ୍ଲୋଳହୀନ ନିସ୍ତବ୍ଧ ବୀଚି,
ତଥାପି ସାତ ରାଜାର ଧନ
ଏକ ମାଣିକ ।

ଅଥଚ ଫୁଟେ ମନ ରଙ୍ଗିନ
କରବୀ
ଶାଖେ ଶାଖେ ତା'ର କେତେ ହାହାକାର
ସୈକତ ବୃନ୍ତ ନିଷ୍ଠୁର ଆକାଶ ତା'ର
ତଥାପି ଇଚ୍ଛା ମୋ ସ୍ୱର୍ଗଜୟୀ
ଅପରିସୀମ ପ୍ରେମ
ସ୍ନେହ ବି ।



(ଝଙ୍କାର—ସପ୍ତଦଶ ବର୍ଷ—୧ମ ସଂଖ୍ୟା)

# ସୁନାର ଝରଣା

—ଶ୍ରୀ ଗୁରୁପ୍ରସାଦ ମହାନ୍ତି

ହସି ହସି ଝରିଗଲା ସିମେଣ୍ଟର ଚଟାଣ ଉପରେ
ସୁନାର ଝରଣା;
ଯେତେବେଳେ ଏ ଗଳିରେ ଖେଳୁଥିଲା ଘୂର୍ଣ୍ଣିଥିଲେ ଲୋକେ
ଘୂର୍ଣ୍ଣିଥିଲା ମୋ ଦେହରେ ପଶ୍ଚିମର ପଳାତ ମୂର୍ଚ୍ଛନା ।
ପଶ୍ଚିମର କୁହୁଡ଼ିରେ ତାରା ହଜେ ଜହ୍ନ ହଜିଯାଏ
ଝଡ଼ାପତ୍ର ଠେଲି ଠେଲି ଧୂଳିଯାଏ ସମସ୍ତ ବ ଯାଏ
ଜୀବନକୁ ବର୍ଣ୍ଣିକିଏ ଝରିଯାଏ ଆସ୍ତେ ଖସିଯାଏ ।
ନିଦରେ ମୁଁ ଶୋଇଥିଲି କ୍ଲାନ୍ତ ଦେହ କ୍ଲାନ୍ତଥିଲା ମନ
ଆଖିରେ ମୋ ସୁପ୍ତି ଥିଲା କାମିନୀର ରଙ୍ଗରେ ରଙ୍ଗରେ
ଏ ଦେହରେ ସ୍ୱପ୍ନଥିଲା, ଥିଲା ମୋର ଜୀବନର ଗାନ ।

ଏତେବେଳେ ଅକସ୍ମାତ୍ ଜହ୍ନ ଯଦ ଉଠେ
ଏତେବେଳେ କୁହୁଡ଼ିରେ ଝରିପଡ଼େ ଥୋପି ଥୋପି ତାରା
ଏତେବେଳେ ହଠାତ୍ ମୁଁ ଜାଣିପାରେ ଯବ
ଦେହରେ ମୋ ଛୁଇଁଗଲା ଛପି ଛପି ଗୋପନ ଦକ୍ଷିଣା ।

ପଶ୍ଚିମର କୁହୁଡ଼ିରେ ଜହ୍ନ ହଜେ, ତାରା ହଜିଯାଏ
ହସି ହସି ଝରିଯାଏ ସିମେଣ୍ଟର ଚଟାଣ ଉପରେ
ସୁନାର ଝରଣା
ତା ଆଖିର ଡେଣାତଳେ ଡେଇଁ ଉଠେ ମୋ ମୁହଁର ଛାଇ ।

ମୁଁ ଖୁନ୍ଦିବ ତା ଆଖିକୁ ଅପଲକ ପୁଣି ଘ୍ରାଣହୀନ
ତା ଓଠରେ ଯେତେ ଫୁଲ୍ ଦଳନ୍ଦୋଳ ରଙ୍ଗ ଗୋଳିଦିଏ
ମୁଁ ଖୁବ୍ବ ଖୋଜିଯିବ ସେଠି ମୋର ପ୍ରାଣର ସନ୍ଧାନ ।
ତା ପାଦରେ ଛନ୍ଦ ଅଛୁ, ତା ଆଖିରେ ଝିକ ମିକ ତାରା
ତା ଦେହରେ ଯେତେ ଢେଉ ଜହ୍ନ ଆଉ ତାରା ଆଲୁଅର
ତା ବେଣୀରେ ଲୀଳାସ୍ମିତ ସ୍ୱପ୍ନ ଯେତେ ଉଆଁସ ରାତର
ତା ଭିତରେ ଆତ୍ମା ମୋର ରହେ ଅବା ଗୋପ୍ୟ ଝଙ୍କାର ।

ଝରଣାର ବେଣୀଙ୍କୂଳେ ଝରଣାର ଶାଢ଼ୀ ଢେଉ ଖେଳେ
ପଉଷର କୁହୁଡ଼ିରେ ଆଖିରେ ମୋ ଜ୍ୟୋତ ଯେବେ ନଭେ ,
ଝରଣାର କୂଳେ କୂଳେ ଆଘ୍ରୁହତ ମୁଁ ଏକ ପଥିକ
ପାଣି ଖୋଜେ ସ୍ୱପ୍ନଖୋଜେ, ଖୋଜେ ମୋର ଦୀପର ଆଲୋକ ।

ସୁନାର ଝରଣାଯାଏ ଝର ଝର ସିମେଣ୍ଟର ଚଟାଣ ଉପରେ
ପଉଷର କୁହୁଡ଼ିରେ ଝରେ ଝରେ ଦୁଇଟାର
ଆଗୁ ମୋର ପଥ ଝଡ଼ି ପଡ଼େ
ମୁଁ ତାକୁ ପାଇବ ଭଲ ବ୍ୟର୍ଥତା ମୋ ପୁଞ୍ଜିଭୂତ କରି
ଜୀର୍ଣ୍ଣ ମୋର ଅବଶେଷ ଜାଲିପୋଡ଼ି ପଉଷର ମ୍ଳାନ ଗୋଧୂଳିରେ ।



( 'ସମୁଦ୍ର ସ୍ନାନ'ରୁ ସଂଗୃହୀତ )

# ଗୋଟିଏ ପ୍ରାର୍ଥନା

—ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)

—୧—

ତୁମର କୋମଳ ହାତ ନେଇ ଦୂର ଅନ୍ଧାର ଗହନୁ
ଫୁଟାଇଛୁ ଫୁଲସବୁ ଚଉଦଗେ ମୋର
ମୁଁ ଦେବ ବା କେଉଁ ଫୁଲ ତୁମର ହାତରେ
ମୋ ପାଖରେ ଜମାଯାହା ସେତ ସବୁ ତୁମ ଉପହାର ।

—୨—

ତୁମକୁ ମୁଁ ଭୁଲିଗଲି କାମନାର ନିଆଁରେ ତରଳି
ତୁମକୁ ଖୋଜିଲି ଯେବେ ଶାୟିତ ମୁଁ କଣ୍ଟକ ଶଯ୍ୟାରେ
ତୁମକୁ ପାଇଲି ନାହିଁ ନିଆଁ ଅବା କଣ୍ଟକର ମେଳେ
ପାଇବ ତୁମକୁ ସତେ ଫୁଲ ଆଉ ହୃଦର ଜୁଆରେ ?

—୩—

ମିଶିଯାଉ ମୋ ଦେହରେ ତୁମର ନିଃଶ୍ୱାସ
ଉତ୍କଣ୍ଠ ମୁଁ ଶୁଣିବାକୁ ତୁମର ସଂଗୀତ
ତୁମେ ଆସି ମିଶିଯାଅ ମୋର କାମନାରେ
ମିଶିଯାଏ ଯେଉଁପରି ଶୀତମାଝେ ମଧୁର ବସନ୍ତ ।

—୪—

ଅଶ୍ରୁ ମୋର ଅବାଧ ସନ୍ତାନ
ଆଶା ମୋର ସମୁଦ୍ରର ଢେଉ
ତୁମେଇ ପରୀକ୍ଷା କର ଶ୍ରେଷ୍ଠ ମୋର ଆଶା ଓ ଅଶ୍ରୁରେ
ତୁମର ଚରଣତଳେ ଅବଶେଷେ ବିଶ୍ରାମ ଦେ ନେଉ ।



(ଝଙ୍କାର—୨୨ଶ ବର୍ଷ—ପ୍ରଥମ ସଂଖ୍ୟାରୁ ସଂଗୃହୀତ)

# ସମୟର ସ୍ମୃତି

—ଡକ୍ଟର ଗୋପାଳ ଚନ୍ଦ୍ର ମିଶ୍ର

ବିଗତ ଦିନ ସେଇ ସ୍ୱର୍ଣ୍ଣୀକୃତ ପ୍ରାଚୀର ଉପରେ
ଆଶା ଓ ଆକାଂକ୍ଷା ରୂପୀ ଦୁଇଗୋଟି ଜଣୁଣୀ ପକାଇ
ହୁଏତ ମୁଁ ଛିଆହେବି ସାଂପ୍ରତିକ ସମାଧିର ପାଶେ
ଉପଲବ୍ଧି ହେବ ମୋର ସମସ୍ତର ଚେତନା ସଦ୍ଭୂତ ।

ଅତୀତ ନଥିଲା କେବେ ଯାହା ଆମେ କହୁଛୁ ଅତୀତ
ବର୍ତ୍ତମାନ ନାହିଁ କିଛି ଯାହା ଆମେ କହୁ ବର୍ତ୍ତମାନ,
ଭବିଷ୍ୟତ ନାହିଁ କିଛି ଆଜି ଯାହା ନାହିଁ ଏଦ୍ଧକ୍ଷଣି
ଜନ୍ମ-ମୃତ୍ୟୁ ଧ୍ୱଂସ, ଛନ୍ଦ ସମସ୍ତକୁ ମାପିବାର ସ୍ଥିତି ।



(ଝଙ୍କାର—୨୩ଶ ବର୍ଷ/୧୦ମ ସଂଖ୍ୟାରୁ ସଂଗୃହୀତ)

# କୌଣସି ଅନାମଧେୟ ମହାପୁରୁଷଙ୍କୁ

—ବେଣୀଧର ରାଉତ

ସୂର୍ଯ୍ୟର ଉର୍ମିଳ ରଙ୍ଗରେ
ସମୁଦ୍ର-ତରଙ୍ଗର ଚଳ୍ ଚଳ୍ ବୃତ୍ତାପର
ଆକାଶରେ ଅନେକ ଅନେକ ଜ୍ୟୋତିଷ୍କ,—
ମେଚକ ଆକାଶ ପୀଠରେ
ପ୍ରୋଜ୍ଜ୍ୱଳ ଓ ପୈତୃକ ଜ୍ୟୋତିଷ୍କ—
ଅନେକ, ଅନେକ !
ଏ ଅବଧି, ଅବକ୍ରାନ୍ତ ଆର୍ଯ୍ୟ ପ୍ରସ୍ତରରେ,
ଅନବଚ୍ଛିନ୍ନ ପୁରାଣ ଓ କାବ୍ୟର ଘୋଷଣାରେ
ଅନେକ ଜ୍ୟୋତିଷ୍କ ଭାଗ୍ୟବାନ
ଏବଂ ଅନେକ ଭାଗ୍ୟବତୀ ତା'ରା,—
ଯେମିତି—ମରୀଚ, ପୁଲସ୍ତ୍ୟ, ଅତ୍ରି,
ଅଗସ୍ତି ବା ଧ୍ରୁବ,
ଏବଂ କେତେ ଅରୁନ୍ଧତୀ, ଅନୁରାଧା କେତେ ।
ଆମର ବି କ୍ଷମତା ଓ ପ୍ରଜ୍ଞାର ପନ୍ଥ
—ଇତିହାସର ପରିଣାମରେ
ଅନେକ ମହାପୁରୁଷ,
ହୁଏତ ମହାପୁରୁଷ ।
ସମସ୍ତେଇ ଯଶରଙ୍କ
ଅନନ୍ତ ନାମ କୀର୍ତ୍ତନର ବଳାଯୀ
ଓ ବ୍ୟସନୀ

ଏବଂ ବଲଙ୍କାର ଆତ୍ମହତ୍ୟା ଦ୍ୱାରା ଏବଂ
ସ୍ତ୍ରୀର ଭକ୍ଷକ ।
(ଜନ୍ମ);
ସେଇ ଜ୍ୟୋତିର୍ମ ମଣ୍ଡଳରେ
ଅନେକ ପ୍ରଚ୍ଛନ୍ନ, ମହାନ୍ ଓ ଭାଗ୍ୟଧର
ଜ୍ୟୋତିର୍ମ ପଥ—ଅଗସ୍ତି ବା ଧ୍ରୁବପଥ
କୌଣସି ପକ୍ଷୀ ଜନତାର
ଶାନ୍ତ ନିର୍ଜନତା ଭିତରେ,
ସମସ୍ତ ବର୍ଣ୍ଣର ସଂପୂର୍ଣ୍ଣ ଜୀବନ ଭିତରେ
ଏବଂ ନିଜ ଆତ୍ମାର ଏକକ ଆଲୋକକୁ
ବହ୍ନି ଶିଖ ରୂପେ ବ୍ୟାପ୍ତି ମଧ୍ୟ କରିଥିବା
ଉତ୍ସର୍ଗୀକୃତ କୌଣସି
ମହାପୁରୁଷଙ୍କୁ ପ୍ରଣାମ କରେ
ହେ ଅନାମଧେୟ ମହାପୁରୁଷ
ହେ ଜନତାର ମହାପୁରୁଷ
ହେ କୋଣାର୍କର ଶିଳ୍ପୀପରି ଆତ୍ମଲୀନ ମହାପୁରୁଷ, ତୁମକୁ
ମୁଁ ପ୍ରଣାମ କରେ ।
ବୋଧହୁଏ ତୁମଠାରେ ଏକାଦଶ ଇନ୍ଦ୍ରିୟ ସଂହତି,
ବୋଧହୁଏ ସେଥିପାଇଁ ନିଜଠାରେ ତୁମେ
ସମାଜ-ବ୍ରହ୍ମାଣ୍ଡ ତୋଳି
ଆତ୍ମାଲୋକରେ ଫୁଟାଇଥିଲ ସହସ୍ରର ପଦ୍ମ
—ଶତଦଳତାର ବଚନ ଉତ୍ସରେ
ତେଣୁ ନିଷ୍ଠୁରର ଉଦାପ୍ତିରେ
ପରର ଅନାସକ୍ତିରେ,
ଆତ୍ମତ୍ୟାଗ ଓ ପରାର୍ଥରେ
ତୁମେ ହୁଏତ କୌଣସି ଅଗସ୍ତ୍ୟ ବା ଧ୍ରୁବ—

ପ୍ରୋଜ୍ଜ୍ୱଳତର କୌଣସି ଅଧିକ ଆକାଶରେ ।
ଏବଂ ମାତରଶ୍ୱା ସମତ୍ର ବେଦସୀରେ—
ସ୍ୱର୍ଗ ଏବଂ ଧରଣୀର ମିଳନ ପୀଠରେ ॥



( ଝଙ୍କାର—୧୬ଶ ବର୍ଷ/୧୧ଶ ସଂଖ୍ୟାରୁ ସଂଗୃହୀତ )

# ପ୍ରୀତି ଓ ଭୀତି

—ଚନ୍ଦ୍ରାମଣି ବେହେରା

ତୁମେ କଅଣ ଭାବୁଛ
ମୋ ଜୀବନ କେବଳ ଆଦିଗନ୍ତ ତମିସ୍ରାରେ ଆଚ୍ଛନ୍ନ ?
ତୁମେଇ କେବଳ ପ୍ରଭାମୟୀ ବିଦ୍ୟୁତ୍,
ବେଳେ ବେଳେ ଯେତେ ଯେମିତି ଅନୁକମ୍ପା ଦେଖାଇ
ତୁମେ ଉଦ୍‌ଭାସିତ୍ କରୁଛ
ମୋର ଅନ୍ଧକାରର ଅନ୍ଧ ପଥ
ମୋର ବେଦନାର ଅମ୍ବୁଦ ?
ଯଦି ତୁମର ମନରେ ତାହା ହିଁ ଥାଏ ।
ତେବେ ମୁଁ କହିବ
ତୁମେଇ କୃପାପାତ୍ର

ତୁମେ କ'ଣ ଭାବୁଛ
ପ୍ରଣୟର ନିଶା ମୋର
କେବଳ ତମିସ୍ରାଭିସାର କରୁଛି ମୋର ଜୀବନରେ ।
ତୁମେ କ'ଣ କେବେ ଲକ୍ଷ୍ୟ କରିଛ
ତାର ଶୁକ୍ଳାଭିସାର
ତାର ଅପ୍ରଗଲ୍‌ଭ ଜ୍ୟୋତ୍ସ୍ନାର ଐଶ୍ୱର୍ଯ୍ୟ

ଦେଖିନା କଟ୍ଟସ୍ତୁ
ତାର ତମିସ୍ରାଭିସାରରେ
ତାର ହୃଦୟରେ
ମୋର ସମର କ୍ଲାନ୍ତ ଶରୀର ପାଇଁ

ଯେ କେମିତ ସଜାଇ ଦିଏ
ଆରାମ ଓ ବିରାମର ସୁକୁମାର ଶଯ୍ୟା ।
ତାର ଶୁକ୍ଳାଭିସାରରେ
ମୋର ଅବଶ ପ୍ରାଣ ପାଇଁ ସେ ବାଢ଼ି ଦିଏ
ରଜର କ ସନ୍ତଷ୍ଣ ସମ୍ଭାର ।
ଦେଖିନା କଷ୍ଟସ୍ପ ।

ମୁଁ ତୁମର କ୍ଷଣିକ ଦାନ ଅସ୍ୱୀକାର କରୁନ
ଦୁର୍ଦ୍ଦିନରେ ମୋର ତମିରକୁ କ୍ଷଣିକ ପାଇଁ ଯେ ଦୂରକରୁଛ
ମୁଁ ଅସ୍ୱୀକାର କରୁନ
କିନ୍ତୁ ସେ ଆଲୋକର ଅହଂକାର
କ ଉଗ୍ର, କ ତୀବ୍ର, କ ଦୁର୍ବିସହ

କ୍ଷଣକ ପାଇଁ ତମେ ଆଲୋକ ଦିଅ ସତ୍ୟ
ପରକ୍ଷଣରେ ମୋର ତମିରକୁ
କର ଅଧିକତର ସାନ୍ଦ୍ର
କର ଅଧିକତର ନିବଡ଼
କର ଅଧିକତର ଦୁର୍ବିସହ
ମୋର ସେଇ ଜ୍ୟୋତ୍ସ୍ନାମୟୀ
(ମୁକ୍ତ କଣ୍ଠରେ ମୁଁ ଅଙ୍ଗୀ କରୁଛି)
ସେହି ମୋର ପ୍ରୀତି,
ହେ ଗର୍ବିତା
ହେ ଚଞ୍ଚଳା
ହେ ବିଦ୍ୟୁତ
ତୁମେ ମୋର ଭୀତି ।

●

(ଝଙ୍କାର ୧୦ଶ ବର୍ଷ/୧୦ମ ସଂଖ୍ୟାରୁ ସଂଗୃହୀତ)

# ଯୁଗ୍ମମିଳନ

—ଶ୍ରୀମତୀ ବିଦ୍ୟୁତ୍‌ପ୍ରଭା ଦେବୀ

ଆମ ରୁଷା ରୁଷି — ମେଘରେ ବିଜୁଳି ଗାର
ଆମ ମନ ଖୁସି — ଝୁଲୁ ଝୁଲୁ ନଈ ଧାର ।
ଆମ କଳି ଗୋଳ — ସକାଳ ମେଘର ଡାକ
ଆମ ମନ ମେଳ — ଗୀତ ମଧୁ ବୀଣା ତାର ।

ଆମ ରୋଷ ଲୁହ — ଝେରୁଅ ବରଷା ଝର
ହସବେଳ—ମୁହଁ — ପ୍ରଭାତର କୁଆଁ ତାର
ଆମ କଥା ଭଷା — ଅମାବଅ ବର୍ଷି ପାଣି
ଆଶା ଓ ନିରାଶା — ନିଦାଘ ବରଷା ଧାର ।

ମନ ଖୋଲି ଖୋଲି — କୁଆଁ ର ପୁନିଅଁ ରାତି
ଗୀତ ବୋଲି ବୋଲି — ଚଇତାଳୀ ବଣଗୁଡ଼ ।
ଆଜି ନିଜ ଆମ — ଉଦୁଣ୍ଡା-ଉଡ଼ାଲ ହସ
ଆମ ସଜବାଜ — ଉଦଳି ପ୍ରଦୋଷ ଭଢ ।

ଆମ କୋଳାକୋଳି — କୁନିଶିଶୁ ଖନ କଥା
ପ୍ରୀତ ଦୋଳାଦୋଳି — ମଳୟ ଉଲୁଲୁମତା ।
ସୁଖ ଦୁଃଖର — ଯୁଗଳ କବିତା ଆମେ ।
ଆମେ ସୃଷ୍ଟିର — ଉତ୍ସବ ମୁଖରତା ।



(ଝଙ୍କାର—ଚତୁର୍ଥବର୍ଷ/ଅଷ୍ଟମ ସଂଖ୍ୟାରୁ ସଂଗୃହୀତ)

# ପଦାବଳୀ

—ଦୁର୍ଗାଚରଣ ପରିଡ଼ା

ଗୋଟିଏ ମୁହୂର୍ତ୍ତ ବି
ମୁଁ ସହି ପାରେନି
ତମର ବିରହ
ତମର ଅଶ୍ରୁ !

ତେଣୁ,
ମୋର ପ୍ରତ୍ୟେକ ମୁହୂର୍ତ୍ତର ସାଧନା
ତୁମକୁ ଗଳାଲଗ୍ନ କରିବ
ଘନଶ୍ୟାମର ।

ତମକୁ
କଣ୍ଠାଶ୍ଳେଷ ଦେବ
ଆମରଣ
କିଶୋର-ଚନ୍ଦ୍ରମାର

ତମେ ମୋର ରାଧା,
—ମୋର ଦ୍ୱିତୀୟ ସତ୍ତା
ମୁଁ ଏକ ଚିରନ୍ତନୀ
ନିର୍ଲିପ୍ତା ଲଳିତା ।



( ଝଙ୍କାର—[illegible]ଷଣ ବର୍ଷ—[illegible]ମ ସଂଖ୍ୟାରୁ ସଂଗୃହୀତ )

# ପକ୍ଷହୀନ କପୋତ

- ସୁଧାଂଶୁମୋହନ ରାଉତରାୟ

ପକ୍ଷହୀନ ମୁଁ କପୋତ ଅଟିଛୁ କହିବ ମଣିଷ କଥା
ଅନ୍ତରେ ମୋର ଘୃଣାର ଲେପନ ଶୁଣିଲେ ନୋଇଁବ ମଥା
ମୁଁ ଥିଲି ସୁସ୍ଥ ଜନ୍ମଭୂମିରେ ଆଜି ତ ପଙ୍ଗୁ ହୀନ
ପକ୍ଷ ମୋହର ପକ୍ଷ ହରାଇଛୁ ତନୁ ମୋ ହୋଇଛୁ କ୍ଷୀଣ ।

ଗୋଟିଏ ପକ୍ଷ ପଡ଼ିଅଛୁ ଝଡ଼ ପୁଞ୍ଜି ଶାସନ ତଳେ
ଅଦ୍ୟାପି ତାହା ଲଗାମ ଲଗାଇ ମୋହର ଶକ୍ତି କଳେ
ଦୈନ୍ୟ ଆଘାତେ ସ୍କନ୍ଧ ଛିଡ଼ିଛି ଅଦ୍ୟାପି ଲହୁ ଝରେ
ମୋହ ପରି କେତେ କପୋତ ଜଠର ପେଷଣ କଳରେ ମରେ

ସମାଜ ଅନ୍ୟ ପକ୍ଷ ନେଇଛୁ ସ୍ୱାମୀମାନ ମୋତେ କରି
ଦେବ ମନ୍ଦିର ଅଟକ କରିଛୁ ଦୁଃଖ ନେଇଛୁ ବରି
ଗୋଷ୍ଠୁ ଛେଳିଠାରୁ ଶ୍ରେଷ୍ଠ କରି ମୋତେ ଯାତନା ଦେଇଛୁ ଯେତେ
ଯୁଗ ଯୁଗ ଧରି ପତିତ ରହିଛୁ କହିବ ବାହାଣୀ କେତେ ?

ଉପହାସ ମୋତେ କର ନ ବନ୍ଧୁ ଦେଖି ମୋର ଏହି ରୂପ
ଦୁଃଖ କାତରେ ନାହିଁ ମୁଁ ଟଳିଛୁ, ନ ଡରିବ ଫାଶୀ ଯୂପ
ଯୁଗ ନିର୍ଦ୍ଦେଶ ଆସେ, ସାବଧାନ ରକ୍ତ ପିପାସୁ ଦଳ
କଳା ପାହାଡ଼ ମୁଁ ମନ୍ଦିର ଖୋଲ, ବଳ ମୋର ନାହିଁ କଳ
ଶାନ୍ତି, କପୋତ ଡାକ ଦିଏ ଆଜି ପକ୍ଷ ମୋ ଦେଇଦିଅ
ଉଡ଼ି ମୁଁ ବୁଲିବ ମୁକ୍ତ ଆକାଶେ ଭୁଲି ତବ ମାନ ନିଅ ।



( 'ପକ୍ଷହୀନ କପୋତ'ରୁ ସଂଗୃହୀତ )

# ମାର୍ଜାର

—ସୌରୀନ୍ଦ୍ର ବାରିକ

ତୁମ ଆଖିରେ ଅନ୍ଧାରର ନିଆଁ
ପାଦରେ ସୃଷ୍ଟିର ନୀରବତା ।
ଯେଉଁ ମୂଷାମାନେ ଶୂନ୍ୟତାକୁ
ଚିକି ଚିକି କରି ଦାନ୍ତରେ କାଟନ୍ତି
ଅକାଳର ନଖ ନେଇ ତୁମେ
ତାଙ୍କୁ ଶିକାର କର, ଖାଇବା ଆଗରୁ
ପୁଣି ତାଙ୍କ ମନ୍ଦ୍ର ଝୁମ୍ପିରେ ଖେଳ ।
ଯେମିତି ତୁମେ ଲୋମଶ ମୃତ୍ୟୁ
ଆଉ ଏ ଖେଳ ଆନନ୍ଦର ହିଂସ୍ରତା ।
ଦେହରେ କନ୍ଦୁ ଶିଶୁର କୋମଳତା
ଡାକରେ ପୁଣି ଦେବ୍ରୋଟି ମାଧୁର୍ଯ୍ୟ ।
ଦୁଧ ପାଇଁ ଅଳି କଲେ, କିଂବା
କୋଳ ଭିତରେ ଘୁଙ୍ଗୁ ଘୁଙ୍ଗୁ ହେଲେ
ମନେ ହୁଏ ତୁମେ ଯେମିତି
ସ୍ମୃତିର ମୁହୂର୍ତ୍ତେ ଅତୀତ ଏବଂ
ଭବିଷ୍ୟତ ସ୍ୱପ୍ନର ଅସରନ୍ତି ଗୁଞ୍ଜରଣ ।
ସେତେବେଳେ ହେ ମାର୍ଜାର !
—ତୁମେ ନୁହଁ ଲୋମଶ ମୃତ୍ୟୁ,
ତୁମେ ଯେମିତି ଖାଲି ବଞ୍ଚି ରହିବାର ଲୋମଶ ଆନନ୍ଦ ।



( ଝଙ୍କାର—ଊନବିଂଶ ବର୍ଷ—ପ୍ରଥମ ସଂଖ୍ୟାରୁ ସଂଗୃହୀତ )

# ଶୂନ୍ୟତାର ସିଢ଼ି

—ଉମାଶଙ୍କର ପଣ୍ଡା

ମୋ କୋଠରୀ ନଗ୍ନଟିଆ
ବାହାରେ ଅସଂଖ୍ୟ ଶବ୍ଦ ପକ୍ଷୀଙ୍କର ଗଛରୁ ପଡ଼ିବା
ଯେମିତି ଗୋଟାଏ କିଛି ହଜିଗଲା ସମୟର ସମୁଦ୍ରରେ ।
ତମ ଦେହଠାରୁ ମୋର ଦେହ କେତେ ଶୀତଳ ଲାଗୁଛି
ଯେବେଠାରୁ ଏ ଚଇତାଳି ପକ୍ଷୀଙ୍କ କାଳଠାରୁ ଆରମ୍ଭ ହୋଇଛି ।

ଏ ଋତୁ ବସନ୍ତ ଏଠି । ସହରରେ ହୋଲିଖେଳ ଏବଂ ବାହାଘର ।
ନିରର୍ଥକ ଶୂନ୍ୟତାକୁ ଛାତିରେ ଜାବୁଡ଼ି
ଅଲକ୍ଷ୍ୟରେ ମୁଁ ଶୁଣିଛି ପକ୍ଷୀଙ୍କର ଝଡ଼ିବା ଶବ୍ଦକୁ
ନୀଳ ନୀଳ ମେଘ ସବୁ ଅମ୍ବରର ସମୁଦ୍ରରେ ଭାସିଗଲେ
ବହୁଦୂର ନିର୍ଜନ ଦ୍ୱୀପକୁ ।
(ଯେଉଁଠି ଅସଂଖ୍ୟ ଫୁଲ, ପ୍ରଜାପତି ଓ ଅନେକ ଦୀର୍ଘଶ୍ୱାସ ।)
ଝମ୍ପା ଏକ ଐତିହ୍ୟର ଭଙ୍ଗା ଦେଉଳର ନାଟ ମନ୍ଦିରରେ
ମୁଖାମୁଖି ଅନ୍ଧକାର ଶୂନ୍ୟତା ଓ ନିର୍ଜନତା
ତମର ଦେହର ଶାଖାରେ ଶାଖାରେ ଖାଲି
ମେଞ୍ଚା ମେଞ୍ଚା ପଲାଶର ନିଆଁ
ଅଜନ୍ମା ଇଚ୍ଛାରେ ଦଗ୍ଧ ।

ଏ ଋତୁ ବସନ୍ତ ଏଠି । ଈଶ୍ୱରଙ୍କୁ ଡାକିବାର ଇଚ୍ଛା ନାହିଁ
ଆଖିରେ ମୋ ନିଦ ନାହିଁ ଅଧରରେ ହସ ନାହିଁ, ଫୁଲ ନାହିଁ
ରଙ୍ଗ ନାହିଁ କ୍ୟାଲେଣ୍ଡରର ପୃଷ୍ଠାଗୁଡ଼ିକରେ । ସବୁକିଛି ଇତସ୍ତତ
ଗାଇବାର ଇଚ୍ଛା ନାହିଁ । କେବଳ ଦେହରେ ଦେହ
ଏବଂ ଖାଲି ଉତ୍ତେଜନା, ଦୀର୍ଘଶ୍ୱାସ
ଏଠି, ନିମନ୍ତ୍ରଣ ଏବଂ ବନ୍ଧୁତ୍ୱର ବନ୍ଧନ ଭିତରେ ।
ଆମର ଦୁଇଟି ଗାଆଁ ଓ ଦୁଇଟି ମନ ପାଖାପାଖି

ଏବଂ ତା ମଝିରେ ଥିବା ଅଶ୍ୱତ୍ଥ ଗଛରେ
ଝୁଲୁଥିବା ବାଦୁଡ଼ିଙ୍କ ପଣ, ଝରକାର ଗ୍ରିଲ ଏବଂ ପରଦାରେ
ସୁପ୍ରଚୁର ଅବସର ଝୁଲୁଥିଲା ବର୍ଷ ବର୍ଷ ଧରି । ଆଉ ମୁହୂର୍ତ୍ତିକ ପାଇଁ
ଆମେ ଦୁହେଁ ଚୁପ୍ ଚାପ୍ ଶୋଇଥିଲେ । ସ୍ୱେଦ ଥିଲା, ସ୍ୱାଦ ଥିଲା
ଆଉ କିଛି ଅବସାଦ ଥିଲା, ବିଛଣାରେ, ଫାଙ୍କିଲ ପବନ ଏବଂ ଅଶ୍ୱତ୍ଥ ଗଛରେ
ପଥହୁଡ଼ା ବାଟୋଇର କ୍ଳାନ୍ତି ଓ ବିରକ୍ତି ଥିଲା ମୋ ମନର ପ୍ରତ୍ୟେକ ଥାକରେ
ତା ପରେ ବିକଳ ହେଲା ଏ ମଧ୍ୟାହ୍ନ, ଝର୍କା ସବୁ ଖୋଲି
ମୁଁ ଗୁଣିଲି ଭଙ୍ଗା ଗଙ୍କା ଦେବାଲ ଉପରେ
ଧରସ୍ତ ପରସ୍ତ ହୋଇ ବସିଥିବା ଶିଉଳିକୁ, କୁଡ଼କୁଢ଼ ବାଲି ଏବଂ
ପରିତ୍ୟକ୍ତ ମୁହୂର୍ତ୍ତମାନଙ୍କୁ
ପୁନଶ୍ଚ ମୋ କୋଠରୀର ସ୍ତବ୍ଧତା ଭିତରେ
ମୁଁ ମାରିଲି ମଛିର ମସ୍ତକ ଏବଂ ହଜିଥିବା ଅତୀତର କଣୋଣ୍ଟିମାନଙ୍କୁ
ସେମାନେ ପଙ୍ଗୁ ହୋଇ ପ୍ରମତ୍ତ ରୌଦ୍ରରେ
ଝୁଲୁଥିଲେ ପରସ୍ପର ପ୍ରତ୍ୟେକ ଶାଖାରୁ ।



( ଝଙ୍କାର—୨୧ଶ ବର୍ଷ / ୮ମ ସଂଖ୍ୟାରୁ ସଂଗୃହିତ )

# ଖରା

—ରମାକାଂତ ରଥ

କେହି କେହି ଆଶା ସଙ୍ଗେ ସୂର୍ଯ୍ୟାଲୋକ ତୁଳନା କରନ୍ତି ।
ସେମାନେ ଦେଖନ୍ତି ସଦ ଏ ଖରାର ପ୍ରଚଣ୍ଡ ପ୍ରକାଶ
ଆତପ ଜଳା ତୃଣ ଏବଂ ପତ୍ର ଏବଂ ବୁଦାକୁ ଜାଳିବା
ନିଃଶ୍ୱାସର ଉତ୍ତାପରେ ରକ୍ତ ଶୋଷି ନେବାର ପ୍ରୟାସ
ରକ୍ତ ଶୋଷି ନେବାପରେ ହୃତ୍‌ପିଣ୍ଡ ଓ ଧମନୀ ପୋଡ଼ିବା—

ସେମାନେ ବୁଝନ୍ତି ଆଶା କେଉଁପରି ଆଶାୟୀର ପ୍ରାଣ
ଭସ୍ମସାତ୍ କରିଥିବା ବହ୍ନିରହେ ଅଙ୍ଗାର ଭିତରେ,
ସକଳ ହରାଇଥିବା କ୍ଷୁଧାର୍ତ୍ତର ଅଲକ୍ଷ୍ୟ ମନ
କେଉଁପରି ବାଧ୍ୟ କରେ ତାସ୍‌ଦେଏ ଯୌବନ ସ୍ୱାଦରେ ।

ତା ପରେ ସେମାନେ ଘୃଣା କରନ୍ତି ଏ ଆଶାର ରୌଦ୍ରକୁ
କାମନା କରନ୍ତି ଖାଲି କାମନାର ଅନୁପସ୍ଥିତିକୁ
ଈପ୍‌ସା ଶୂନ୍ୟ ଅବସ୍ଥିତି ସେମାନଙ୍କ ଈପ୍‌ସାହିଁ ହୁଅନ୍ତା,

ଆପଣାକୁ ହତ୍ୟାକରି ମୃତ୍ୟୁରେ ପୁନର୍ଜନ୍ମ ଲଭି
ପାସୋରି ଏ ପ୍ରାପ୍ତି-ହାନି ଜାଲ ଏବଂ ପାସୋରି ପୃଥ୍ୱୀକୁ
କାମନାକୁ ଅସ୍ୱୀକାର କରିବାରେ ସେମାନଙ୍କ ଅସ୍ତିତ୍ୱ ରହନ୍ତା ।
ମାତ୍ର ଏହା ଅସମ୍ଭବ । ରୌଦ୍ର ତେଣୁ ଆଶାର ବଭକ୍ତ ।



( 'କେତେଦିନର'ରୁ ସଂଗୃହୀତ )

# ଷ୍ଟାଲିନ୍

—ବ୍ରଜନାଥ ରଥ

ପରଶୁରାମର କୁଠାରରେ ଯେତେ ହାଣିଲେ,
ନମର ମୁଣ୍ଡ ସାଗର ଭିତରୁ ହସିଲ;
ଅଗ୍ନିର ଖର ଦହନରେ ଯେତେ ଜାଳିଲେ
ଝପିଯାଇ ତୁମେ ବହ୍ନି ବାହନେ ବସିଲ ।

ହାତୁଡ଼ିରେ ଯେତେ ମସ୍ତକେ କଲେ ପ୍ରହାର
ମାଟିତଳୁ ତୁମେ ଉଠିଲ ଊର୍ଦ୍ଧ୍ୱ ଗଗନେ
ଅତଳ ସାଗରେ ବୁଡ଼ାଇ ମାରିଲେ ତୁମକୁ
ପଦ୍ମର ସମ ଫୁଟିଲ ସିନ୍ଧୁ ଆନନେ ।

ଉଦ୍‌ଗତ ଯେତେ ତରବାରୀ ଶିର ଛେଦିଲା
ପଲକେ ନୂତନ ମସ୍ତକ ହେଲା ବାହାର,
ପାତାଳ ଗର୍ଭେ ଗୁପିଦେଲେ ଯେତେ ତୁମକୁ
ଊର୍ଦ୍ଧ୍ୱରେ ଉଠି ଧରଣୀରେ କଲେ ବିହାର ।

ଅଦ୍ଭୁତ ତୁମେ, ଅଦ୍ଭୁତ ତୁମ କରଣୀ
ସଂହାରର ତୁମେ ମୁକ୍ତିର କବିତା,
ମାରିଲେ ମାରନା, ଅବ୍ୟୟ ତୁମ ସରଣୀ
ଧରଣୀର ତୁମେ ଅନ୍ଧାରନାଶୀ କବିତା ।



(ଝଙ୍କାର—୨୫ଶ ବର୍ଷ/୧୨ଶ ସଂଖ୍ୟାରୁ ସଂଗୃହୀତ)

# ତାରା

—ସୀତାକାନ୍ତ ମହାପାତ୍ର

ଯେଉଁମାନଙ୍କ ସହିତ ଆମର ଅନେକ ଦିନରୁ ପରିଚୟ ଓ ବନ୍ଧୁତା
ଚଟଶାଳୀ ଅବଧାନଙ୍କର ଓ ବାପା ବୋଉଙ୍କର ଝାମେଲରୁ ମୁକ୍ତି ପାଇ
ଆମେ ମୁହଁ ସଞ୍ଜରେ ଗାଁ ଦାଣ୍ଡରେ ବୋହୁଚୋରି
ଲୁଚକାଳି ଆରମ୍ଭ କଲାବେଳକୁ
ସେମାନେ ବି ସୂର୍ଯ୍ୟଙ୍କ ଡରରେ ଆକାଶର ଢ଼ିଡ଼ ତଳେ, ବାଡ଼ କଡ଼େ
ଲୁଚିଥିବା ଜାଗାରୁ ଝପ୍‌ଝାପ୍ ଡେଇଁ ଆସି
ଆକାଶର ଦାଣ୍ଡ ଆଉ ଅଗଣାରେ
ସଞ୍ଜେଇ ଖେଳ ଓ ଲୁଚକାଳି ଖେଳନ୍ତି
ଆଉ ଆମକୁ ଅନେଇ ଆଖି ମିଟି ମିଟି ବି କରନ୍ତି ॥

ଆମେ ତାଙ୍କ ହିସାବ ରଖିଥିଲୁ
ଏକ ତାରା ମଣିଷ ମରା, ଦୁଇ ତାରା କତର ଦୋଷ
ତିନି, ଚାରି, ପାଞ୍ଚ, ଛଅ, କାହାଣ ଓ ପଣ
ତାଳଗଛ ପାଖ ତାରା, ଆମ ବାଡି ବାଉଁଶ ସନ୍ଧିରେ
କେଳା ମାହ୍ନ ପାଖ ତାରା ଆମ୍ବ ତୋଟା ଆକାଶ ସେନାରେ
ଆମେ ସବୁ ଗଣିଥିଲୁ ଖଡ଼ି ଘଷି, ପଣକଥା ସବୁ ଗାଇ ସାର
ଆକାଶର ଝିଅଆନ୍ ବାଣ୍ଟି ନେଇ ଅବା ଅଧା କରି ॥

ତାରା ସବୁ ତୋଳିଥିଲୁ ସେନ୍ଥା ସେନ୍ଥା ତାରା
ଆମ ବାଡ଼ି ପଟେ ଥୁଣ୍ଟା ଆମ୍ବ ଗଛେ ଚଢ଼ି
ଭଙ୍ଗା ଫୁଲ ପରି ଗୁଞ୍ଜ ଡ଼ରେ ଭର

ଆଙ୍କୁଡ଼ା ନଶି ବଢ଼େଇ ପାଣି ଧାରେ ରହ୍ନ
ବାଛୁ ବାଛୁ ଗାଆଁ ଦାଧି କଇଁଫୁଲ କଢ଼ି ॥

ସିଏ ମୋର ମନ ବୁଢ଼ୀମା ଆଖି ସରଗରେ ଜୁଳୁ ଜୁଳୁ କରେ
କାଚକେନ୍ଦୁ ଦାଗି ପାଣି ଝିରି ତରଙ୍ଗରେ ବୁକେ
ସେଇ ଆଖି ଦର୍ପଣରେ ମୁହଁ ଦେଖେ ଜଣୀଥର ଗମ୍ଭୀର ଅନ୍ଧାରେ
ଥର ଥର କମ୍ପନରେ ଲୁହ ଝରେ ସେ ଆଖି କଣରେ ॥

ଉର୍ବଶୀ, ମେନକା, ରମ୍ଭା, ଦେବଯାନୀ, ବୈକୁଣ୍ଠ, ଅମୃତ
( ଯାହାସବୁ ପୃଥିବୀରୁ ହୋଇ ଅପହୃତ । )
ସେ ତାରାର ରାଜ୍ୟ ଥିଲା ଆମ ହାତ ପାହାନ୍ତାରେ
ଆମେ ସବୁ ଜାଇଥିଲୁ, ଗୀତ ଗାଇ ବୁଦା ମାର, ସ୍ୱପ୍ନ
ଦେଖି ତାରାରେ ତାହାରେ ॥

ଆଜି କିନ୍ତୁ ତାରାମାନେ ଜ୍ୱଳମାନ ଅଗ୍ନିର ଗୋଲକ
କେତେ ଯେ ଆଲୋକ ବର୍ଷ ସୀମାନା ସେପାରେ
ତାରାଗଣା, ମାଆ ଆଖି, ଫୁଲ ତୋଳା, ଓ ମେନକା
ସବୁ କଥା ଯାଇଅଛୁ ସର
ତାରା ଆଜି ମୃତ ପିଣ୍ଡ, ଦୂରବସ୍ତୁ, ଅପ୍ରାପତ
ସ୍ନେହ ପର ପ୍ରୀତ ପର ମଣିଷର ହୃଦୟର ପର ।



( 'ଚନ୍ଦ୍ରନଦୀ' ସଂକଳନରୁ ସଂଗୃହୀତ )

# ଉପହାସ

—କମଳାକାଂତ ଲେଂକା

ଭାଗ୍ୟ ନା ପୌରୁଷ କା'ର
ଛଳେ ହେଲେ ଦୋଷ ନାହିଁ ।
ବଡ଼ୁ ପଣ ଶୂନ୍ୟ ଜରା
ଆଖଡ଼ାର ଘର :

ଯା'ଭିତରେ ବ୍ୟକ୍ତ ଓ ଅବ୍ୟକ୍ତ ଧ୍ୱନି
ଫେଣ୍ଟି ହୁଏ । ନିତ୍ୟ ଚରାଚର—
ଖୋଜେ ପଥ, ଲୋଡ଼େ ରାହା
ସାମାନ୍ୟ ପାଲଟା ଢେଉ,
ସମସ୍ତର ପ୍ରୟୋଜନ ଖାନ ଦମ୍ଭପଣ
ଅଂତମୁଖୀ ନିଃଶ୍ୱାସର
ଉଷ୍ମତାକୁ ଫିଙ୍ଗି ଦେଇ
ବହିଯାଏ ଦକ୍ଷିଣା ପବନ ।

ଭାଗ୍ୟ ନା ପୌରୁଷ କା'ର
ଛଳେ ହେଲେ ଦୋଷ ନାହିଁ ।
ସମସ୍ତର ଛନ୍ଦପତ୍ର, ଦିବ୍ୟ ସିଂହାସନ
ସନ୍ଧିକଟେ ଝେକଧରେ ବଜ୍ରବାହୁ
ମୋ ସୃଷ୍ଟିର ଛନ୍ଦ ପଦ ଉପଧା ଓ
— ଯେତେ ବିକର୍ଷଣ ।

ଅନାଲୋଚ୍ୟ ସଂକ୍ଷିପ୍ତ ସ୍ଥିର
ମୁହୂର୍ତ୍ତ ଭଙ୍ଗେ ଯାଇବାର କାରଣଟି ?
ଭାଗ୍ୟ ନା ପୌରୁଷ କଏ
ଛନ୍ଦହୀନ ? ମୃତ୍ୟୁର ବୟସ
ଜଣାଯାଏ ସଦ୍ୟ ବୈଧବ୍ୟର
ଜଳଧ୍ୱନି, ଶୋକ, କମ୍ପା ହୃଦର ଉଚ୍ଛ୍ୱାସ ।



('ଅନ୍ତଂତ ହସ୍ତ ପ୍ରି' ସଂକଳନରୁ ସଂଗୃହୀତ)

# ବସ୍ ଅପେକ୍ଷାରେ

—ଡକ୍ଟର ଶରତଚନ୍ଦ୍ର ପ୍ରଧାନ

ବସ୍ ଅପେକ୍ଷାରେ
ସୂର୍ଯ୍ୟର ଉଦୟ ପରି
ବୃଦ୍ଧି ରହୁବାରେ;
କ୍ଲାନ୍ତି ଅଛି
ଆନନ୍ଦ ବି ଅଛି ।
ଯୋଡ଼ି ଯୋଡ଼ି ନୀଳପଦ୍ମ
ଅନାଇ ରହିଛି ।

ହଠାତ୍ ଆସିବ ବସ୍
ନାଲି ନାଲି ଧୂଳି ଖେଳି
କଲେଜ ଛକରେ ।
ଆଖିରେ ଅନ୍ଧାର ଲେସି
ଦିନ ଦ୍ୱି ପ୍ରହରେ ।

ଚୁପ୍ ଚୁପ କଥା ସାଥେ
ମୃଦୁ ଗୁଞ୍ଜରଣ
ଲୁଚାଉ ଆଖିର ହସ
ଭେଟ ସମ୍ଭାଷଣ ।
ଏ ବସ୍‌ରେ ପଦ୍ମ ଫୁଟେ ।
ଯାତ୍ରା କେଡ଼େ କଇଁବଣ
ଆନନ୍ଦ ବି ଉଠେ ।

ବସ୍ତି ଆସଇ ତେଇଁ
ଗାଆଁ ଗିର ବଣ
ସହରର ଉପକଣ୍ଠେ
ଏ ମର୍ତ୍ତ୍ୟର ଚୈତ୍ରରଥ
ଏ ମାଟିର ପୁଷ୍ପକ ବିମାନ ।

କେତେ ଆତ୍ମା ବସିଛନ୍ତି ବସ୍ ଅପେକ୍ଷାରେ
ମନର ଆଲୁଅ ଜାଳି
ବେଳେ ଅନ୍ଧାରରେ
ଜେତବନେ, ନୈମିଷା ବା
ନୀଳାଦ୍ରି—କନ୍ଦରେ ।
ତଥାପି ଗୋଧୂଳି ହଜେ
ସହର-ଗଳିରେ ।



(ଝଙ୍କାର—୧୬ଶ ବର୍ଷ/୬ଷ୍ଠ ସଂଖ୍ୟାରୁ ସଂଗୃହୀତ)

# ସେଦିନୁ ପଡ଼େନି ଜଣା

—ଶ୍ରୀ ଶ୍ରୀନିବାସ ଉଦ୍‌ଗାତା

ତମ ମାସ୍ୟାବନୀ ଦେହ ଏବଂ ତା'ର ଲଳିତ କେଦାର
ପୂର୍ଣ୍ଣିମାର ଜ୍ୟୋତ୍ସ୍ନାସ୍ନାତ ସାଗରର ଢେଉ
ନିଷ୍କୂପ ଆକାଶ—କପଟ ପ୍ରଗଲ୍‌ଭ ହୁଏ
ଦେଖିଛ କି ମୁଗ୍‌ଧ ମୌନତାରେ
ଯେତେ ତା'ର ଅକୃତ୍ରିମ ଅନନ୍ତ ଇଚ୍ଛାର ଘନଆଶ୍ଲେଷରେ ॥

ତମେ ଯେତେ ଶୁଣିଅଛ ଯେତକ କମ୍ପନ ମୋର
ଅବରୋହିତ ଆରୋହ, ତୃଷାର୍ତ୍ତି ସଂସ୍କାର
ପ୍ରତିବିମ୍ବ ଯେତେ ତା'ର ସ୍ୱାସ୍ଥଭଲ ଝଲମଲ
ସାଗର ଢେଉରେ—ଜହ୍ନର ଅଶେଷ ଛଟା
ସତରେ ଯେମିତି ।
ସେଦିନ ବି ଦଶିଥିଲି—ପ୍ରଥମ ଅବାଧ ହେଲାଦିନ
ଏବଂ ନାନା ରଙ୍ଗୀନ ସ୍ୱପ୍ନରେ ଗର୍ଭବନ୍ତ ଆକାଶରେ
ଆପେ ଆଙ୍କି ହୋଇଥିଲା କେତେ ଛବି
ଅସଂଖ୍ୟ ଫୁଲର !
ସେଦିନୁ ପଡ଼େନି ଜଣା କେଉଁପରି ପାଦଚପି
ବସନ୍ତ ଆସୁଛି
କଭଲି ମାଜୁଛି ଶର ଆଉ ଶେଫାଳୀର
ସ୍ଫୁଲିଙ୍ଗ ଝରୁଛି ।
କାହିଁକି ନା ତମ ଦେହେ
ସବୁଠାରୁ ଏକାକାର ହୋଇ
ଏକମାତ୍ର ବସନ୍ତ ଜଳୁଛି ॥

●

(ଝଙ୍କାର—୩୨ଶ ବର୍ଷ—ବିଷୁବ ସଂଖ୍ୟାରୁ ସଂଗୃହୀତ)

# ପ୍ରେମ ଅଟେ ଅନେକ ରକ୍ତ ନଦୀ

—ଦୀପକ ମିଶ୍ର

ଯେତେ ଥିଲା ରକ୍ତ ନଈ ଯେତେ ଥିଲା ମୂର୍ଚ୍ଛାର ସେଠାରେ
ପ୍ରତ୍ୟେକ ଦେହକୁ ଧରି ଭାବିଲି ମୁଁ ପହଁଥିବି ଲକ୍ଷ୍ମୀଙ୍କ କୋଳରେ ।
ଏ କ'ଣ ସମୟେ ଗଲେ ବୃଦ୍ଧ ଯେବେ ଛୁଇଁଲି ମୁଁ ଦେହକୁ ତାଙ୍କର
ଯେଉଁମାନେ ମୋତେ ଦିନେ ଟାଣିଥିଲେ ଯୁଦ୍ଧ ଖାଲି ଯୁଦ୍ଧର ଛକକୁ
ଏମାନେ କି ସେଇ ବୀର ଯାହାଙ୍କ ଶରୀର ମୂନ କଳଙ୍କି ଖାଇନି
ଏବଂ ଯିଏ ପଥରକୁ ହଜମ କରନ୍ତି ଏବଂ ଏବଂ ଯିଏ ଅପର ଦୁର୍ବଳ ମୁହୂର୍ତ୍ତେ
ନିଜକୁ ଭାବନ୍ତି ରଜା ଓ ଖାଲି ଭାବି ଭାବି ଫଙ୍କାର ପାଲଟି ଥାନ୍ତି ।
କେତେ ଯେ ଦେଖିଲି ବୀର, କେତେ ଖୋଳ କେତେ ଧନୁଶର,
କେତେ ଫୁଲ ଉଡ଼ୁଥିଲେ ରକ୍ତନଈ ଆର ପାରି ଲକ୍ଷ୍ମୀଙ୍କ କୋଠାରେ ।
ଏବଂ ଓହ୍ଲୁଥିଲେ ବେଳ ଦେଖି ଯେତେବେଳେ ମଧ୍ୟାହ୍ନର କୋହଳ ତର୍ଣ୍ଣିରୁ
ରକ୍ତମାନେ ଶୁଖିଯାଉ କଣ୍ଠା ବନୁଥିଲେ ଓ
ଯାଇ ମୋ ପହଁରା ନଈରେ ମିଶିଲେ ।
କଏ କେଉଁଠି ଅଛ ଆହେ ଆଜ ଶସ୍ତ୍ର ଦେଖିବାକୁ ମୋ ରକ୍ତ ପହଁରା,
ଉପର ଝରକା କାଚ କଣଦରେ ଫାଟି ଯାଉ, ଉଡ଼ିଯାଉ ଭୟରେ ଭ୍ରମର
ଓ ଭ୍ରମର ଯେତେକ ସିଢ଼ି ଉପର ଘରକୁ ଅଜାଡ଼ିବୁ ମୁଣ୍ଡୁଳା ବୃନ୍ଦାରୁ
ତୁମକୁ ଡେଇଁବା ପାଇଁ ଯାହା ହେବ ଛବି ଘର ଆକାରରେ କହିଛର ପିଠି ।
ମୁଁ ଟିକିଏ ରକ୍ତ ଦେବି ତୁମ ଦୁଇ ଧଳା ଗୋଲିପରେ
ମୁଁ ଟିକିଏ ରକ୍ତ ଦେବି ତୁମ ଦୁଇ ଗ୍ରେଟ ଗ୍ରେଟ ଅଲେମ ଗାଲରେ
ତୁମ ବସ୍ତ୍ର ଆଜି ରକ୍ତ ହେଉ

ତୁମ ଦେହ ପ୍ରତ୍ୟେକ କୋଠରୀ ତଳେ ନାଚୁ ରକ୍ତ ଢେଉ
ୱାରମାନେ ଉଡ଼ିଗଲେ ଏଡ଼ିକ ଛତର ମୋତେ ଟିକେ ହସିବାକୁ ଦଅ ।
ଏତିକ ମୁଁ କହିପାରେ ସେ ହସରୁ ରଙ୍ଗ କେବେ ରକ୍ତ ହେବ ନାହିଁ
ଯଦିଚ ମୁଁ ପହରିବ ରକ୍ତ ନଈ ହାତେ ଧରି ଦୁଇଗୋଟି ସମାନ ମନ୍ଦାର



( ଝଙ୍କାର—୧୯ଶ ବର୍ଷ—ବିଷୁବ ସଂଖ୍ୟାରୁ ସଂଗୃହୀତ )

# କେଉଁ ଅତନ୍ଦ୍ରା କବୀର

—ସୌଭଗ୍ୟ କୁମାର ମିଶ୍ର

—୧—

କେଉଁ ଅତନ୍ଦ୍ରା କବରେ ଜିଦ୍‌ଖୋର୍‌ ସ୍ୱପ୍ନ ହୋଇ
ଆଉ କେତେ କାଳ ?
ଅନ୍ଧ ଆଖିପତା ଖୋଲେ ପୁଣି ବନ୍ଦ ହୋଇଯାଏ;
ସ୍ତୂପ ଭିତରେ ଜଳୁଥାଏ ଦୁର୍ଗ ଓ ନଅର ।
ଅପରିଣାମଦର୍ଶୀ କବର ଇଚ୍ଛା ହୋଇ ଆଉ କେତେକାଳ ?
ଶୂନ୍ୟ ଅକାଶ କୋଣରେ ଚହାଙ୍ଗ ମେଘ
ସୂର୍ଯ୍ୟର ଜ୍ୱଳନ୍ତ ହାତ ପୋଛି ନେଇଯାଏ,
ଅହେତୁକୀ ସ୍ନେହରେ ଡାକେ ପାଖକୁ, ପାଖକୁ ଗଲେ
ତା'ର ବ୍ୟବହାର ଅଶୁଚି, ଅଶ୍ଳୀଳ—
ଦର୍‌ବଳସ୍ତୁ ବି ପାଗଳ ।
ସ୍ଥିର କରିଛି, କେଉଁ ଏକ ନିର୍ବିକାର ସକାଳେ
ନିରପରାଧ ମୋର ସ୍ୱପ୍ନଟିକୁ
ରାଜକୋଷର ଶେଷ ସୁବର୍ଣ୍ଣ ମୁଦ୍ରାଟି ପରି
କଣ୍ଟୁଆଳର କିଶୋର ପୁଅ ହାତରେ ଗୁଞ୍ଜିଦେଇ
କହିବ ଯା' ଯା' ଖେଳ ଯା' ତୋର ଦିଗନ୍ତକୁ ।
ଯେଉଁ ଏକ ଅତନ୍ଦ୍ରା କବର ଜିଦ୍‌ଖୋର ସ୍ୱପ୍ନ
ସେ ସକାଳ,
ଆଉ କେତେ କାଳ ?

— ୨ —

ଦୂରର ବାଲିବନ୍ତ ଉପରେ
ଗୋଟିଏ କର୍କି ଜଷ୍ଟେ ଉଡ଼ି ବୁଲୁଚି
କାଣ ଚଣ୍ଡିର ବେକରେ
ଗେରୁଆ ପାଣିର ଫେଣ ଲଗିଛି
ନହେଲେ ଆମର
ଗୋଡ଼ ଖସି ଯାନ୍ତାଣି କାଦୁଅରେ,
ଟିକେଟ ବହୀନ ଯାତ୍ରୀର ମୁଣ୍ଡରେ
ଝାଳ ଥା'ନ୍ତା, ଆଖିରେ ଥା'ନ୍ତା
ମିଛ ଦମ୍ଭର ଦୃଷ୍ଟି ।
ସବୁ ଉପଦ୍ରବ ଦେଇ ତ
ପଠାଇ ଦେଇଛୁ ଆମକୁ—
ପ୍ୟାଣ୍ଟ, କୋର୍ଟ ଓ ବୁଟ୍
କମଲା ଓ ସିଗାରେଟ୍,
ପୁଣି. କଳାଙ୍କ ସ୍ୱପ୍ନରେ
ନୀଳ ସବୁଜ ପକ୍ଷୀ ।
ଖାଲି ଟିକିଏ କହୁଥା'ନ୍ତା
ମୁଁ ଅଛି, ଜୋର୍‌ଦାର ଶବ୍ଦରେ ।
ତୋ' ନଅର କାନ୍ଥରେ
ଦୃଶ୍ୟାବଳୀ
ଯଥେଷ୍ଟ ନୁହଁରେ ସଜା—



( ଝଙ୍କାର—୨୭ଶ ବର୍ଷ/୫ମ ସଂଖ୍ୟାରୁ ସଂଗୃହୀତ )

# କାଗଜ ଡଙ୍ଗାର ଶୋକ

—ସରୋଜ ରଞ୍ଜନ ମହାନ୍ତି

ଶ୍ରାବଣର ମେଘକୁ କିଏ
କିପରି ବା ବିଶ୍ୱାସ କରିବ ? କେତେବେଳେ ସେ ହଠାତ୍
ଅଘଟନ କୁଣିଆ ଭଳି
ସେ ଆସି ପହଞ୍ଚିଯିବ ତମ ବଗିଚାରେ ଓ ତମର
ଅସତର୍କ ମୁହୂର୍ତ୍ତର ସୁଯୋଗ ନେଇ ସେ
ଅଗଣାରେ ପହଞ୍ଚିବ । ଓ ପୁନଶ୍ଚ
ଘରର ଝରକା ଠେଲି ପ୍ରବେଶିବ
ଓଦା କରି ଦିବ ତୁମ ବହିପତ୍ର,
ବିଛଣା ଓ କବିତାର ପାଣ୍ଡୁଲିପି
ସୃଷ୍ଟିର ଲିପିକୁ
ଏବଂ ସର୍ବୋପରି
ତୁମେ ନିଜେ ବାଦ୍ ପଡ଼ିବନି ।।

ତୁମେ ଭୁଲି ଆସୁଥିବା ଅତୀତର ସ୍ମୃତିକୁ
ଓଟାରି-ଉଖାରି ପୁଣି ସେ ମନେ ପକାଇ ଦେବ,
ଲୁଟି ନେଇଯିବ ତମ ସହଜ ଭାବକୁ
ଓ ତୁମେ ଦରିଦ୍ର ହୋଇ ଆଉଥରେ
ଭାବୁଥିବ ବିଗତ ଦିନର
ହଜିଥିବା ହସିଲା ବିଭବ ।।

ଶ୍ରାବଣ ତୁମକୁ ଆଉଥରେ ଦେଇଯିବ
ଦାରିଦ୍ର୍ୟର ଯନ୍ତ୍ରଣା ଓ ଆହତ ପୌରୁଷ,
ଡାକ ଆଣି
କଲମ ମୁନରେ ତୁମ
ଠୁଳ କରାଇବ ପୁଣି
ଭୁଲିଯାଇଥିବା ଦୁଃଖ
ଅବଶିଷ୍ଟ କାହାଣୀର ଶୋକର ଗଳ୍ପାଂଶ, ଯାହା
ଅସମ୍ପୂର୍ଣ୍ଣ ତଥାପି ରହିବ ॥

ଶ୍ରାବଣ ମେଘରେ ଭିଜା ତା'ର ଗୁଞ୍ଜନକୁ
ଆପଣାର ପଣତ କାନିରେ ତୋଳି ବାନ୍ଧିବାକୁ ତୁମ ପ୍ରିୟ ବାନ୍ଧବୀଙ୍କ
ବିଫଳ ପ୍ରୟାସ କଥା
ସେ ମନେ ପକାଇଦେବ
ଏବଂ ତୁମେ
ତାଙ୍କୁ କେନ୍ଦ୍ରକରି ଫଗୁଣର
ଚନ୍ଦ୍ର ଆଙ୍କିବାକୁ ଚେଷ୍ଟାକଲାବେଳେ
ତୁମ ତୁଳୀ ଆଙ୍କୁଥିବ କାକଟସର ଛବି ! !
ଆଦ୍ୟ ଆଷାଢ଼ର ବର୍ଷା
ସମଗିର-ବିରହର ଋତୁ ତ ଶ୍ରାବଣ :
ନିହତ ପ୍ରୀତିର ଋତୁ
କ୍ଷତ ଓ ରୁଦ୍ଧର ଋତୁ
ଶକ୍ତ ଓ ରକ୍ତାକ୍ତ ହେବାର ଋତୁ । ଏବଂ
ଶ୍ରାବଣର ସ୍ୱର :
ସମଗିର ମାନଙ୍କରେ ଖେଳୁଥିବା
ପୁଞ୍ଜୀଭୂତ ବେଦନାର ସମ୍ମିଳିତ
ଏକ ଦୀର୍ଘ-ଶ୍ୱାସ ॥

ଶ୍ରାବଣ ଆସିବ ଏବଂ
ସିଏ ପୁଣି ବଡ଼ା ହୋଇଯିବ
ନିଷ୍ଠୁର ପ୍ରେମିକା ଭଳି
ଆପେ ଆପେ
ଦର୍‌ବିଜୟୀ ଗର୍ବ ନେଇ, କିନ୍ତୁ
ଉପହାର ଦେଇଯିବ ଶୋକ ।
ତା’ ପ୍ରସ୍ଥାନ ପରେ କାଗଜ ଡଙ୍ଗାଟି ଭଳି
ତୁମେ ଭାସୁଥିବ ତାର ଶୋକର ସୁଅରେ ॥



(‘କାଗଜ ଡଙ୍ଗାର ଶୋକ’ ପୁସ୍ତକରୁ ସଂଗୃହୀତ)

# ଜନ ସମୁଦ୍ର

—ହରହର ମିଶ୍ର

ଥିଲା ଭଳି ଜଣାପଡ଼େ
ହଠାତ୍ ଫୋପାଡ଼ି ଦେବାର ସାମର୍ଥ୍ୟ
ମୁଠାଏ ଫେଣ ଭଳି ତୋଳିନେଲେ
କିଛି ହିଁ ନଥାଏ
ହେମାଳ ବରଫ ଭଳି
ପୂର୍ବ ପୁରୁଷଙ୍କ ପୁଣ୍ୟ
ଚେତନା ଥାଏ ଜନ୍ମ ଗାନରେ
ଚେତନା ନଥାଏ ଭିତରେ କି ବାହାରେ
କ୍ୱଚିତ୍ ମିଳିତ ଶକ୍ତି
ସମବେତ, ସଙ୍ଗଠିତ ହେବା
ଇଚ୍ଛାମନ୍ତ ନଦୀମାନେ
ବିକ୍ଷୁବ୍ଧ ଜନ ସମୁଦ୍ରରେ
ଉଠିବା ଭାଙ୍ଗିବା ବ୍ୟସ୍ତତ
ସେଠି ମଧ୍ୟ ଥାଏ ସ୍ୱପ୍ନ
ଇତସ୍ତତଃ ଉଡ଼ି ବୁଲିବାରେ
ମୁଁ ସେ ବେଳାଭୂମିରୁ
ଡାକେ ନିଜକୁ ତରଙ୍ଗରେ
ନିଃସଙ୍ଗ ଧାଇଁବା ଆଗରୁ ବାଲିରେ
ସମୁଦ୍ରର ଅନ୍ତରଙ୍ଗ ସ୍ପନ୍ଦନରେ
ମୋ ପରାଣ, ମୋ ସ୍ପନ୍ଦନ
ଢାଳି ଦେଇଥାଏ
ଏଣେ ଆଦୌ ଚନ୍ଦ୍ରା ନାହିଁ
ଅନ୍ତରକୁ ନେଇ

ବସ୍ତୁପ ସୀମିତ ଏଇ ସମସ୍ତଙ୍କୁ ନେଇ
ଗର୍ବ କରିବାର ନାହିଁ
ହୃଦୟଙ୍କ ଏତେବଡ଼ ଆୟୋଜନ
ଆଳତ, ଅବକାଶ, ଧୂପ ଓ ପହଡ଼
ଯାହା ସବୁ ମଣିଷର, ବ୍ୟକ୍ତିର ଦୈନନ୍ଦିନ
କେବଳ ଆକାର ବିପୁଳ ତାର
ବିସ୍ତାରିତ ଘଣ୍ଟାରବ
ଛୁଏଁ କି ନା... ମନେହୁଏ
ଲାଗିଅଛୁ ଆକାଶ ସମୁଦ୍ର
ସମୁଦ୍ର କି କ୍ଷୁଦ୍ର ଏକ ଢ଼େଲା ଜଳ
ଯା'ଭିତରେ କୋଟି କୋଟି
ଲୁଳିତ ରଶ୍ମିର ଡୋର ଝୁଲନ୍ତ ନକ୍ଷତ୍ର
ଆକାଶକୁ ଛୁଏଁ କି ନଛୁଏଁ
ଏ ମାଟିକୁ ଛୁଏଁ
ଆଉ ଅହରହ ବ୍ୟାକୁଳିତ ହୁଏ
ସେମାନେ ହସନ୍ତି କେଣି ଚଳ୍ମିକ୍
ଯେତେବେଳେ ପରସ୍ତ କଣାଙ୍କ ସମୁଦ୍ର
ଏ ବିଫଳତା, ଏ ଅଜ୍ଞାନତା
ଏ ସୁଷୁପ୍ତି ମୁଁ ମାନିନିଏ
ମୋ କୋଳରେ ବ୍ୟାପ୍ତିର ଶିଶୁ
ଅବଶ କ୍ଳାନ୍ତ ଦେହରେ ମୋର
ତୀବ୍ର ଉଜ୍ଜ୍ୱଳତା ଅବା ହବା ଜାଗରଣ !



( ଝଙ୍କାର—୩୮ଶ ବର୍ଷ—୧୧ଶ ସଂଖ୍ୟାରୁ ସଂଗୃହୀତ )

# ଜହ୍ନ

—ଡକ୍ଟର ପ୍ରସନ୍ନ ମିଶ୍ର

ଏଥର ତ୍ରିକୋଣ ଭୂମିରୁ
ଆମେ ଚୁପ୍‌ଚାପ୍ ଦେଖିପାରିବା ଜହ୍ନ ।
ତୁମର ପାଦ, ନାଭି ଦେଇ ବକ୍ଷରେ
ଓ ଓଠ ଦେଇ ଆଖିରେ
ଜହ୍ନ ପଡ଼ିବ । ନରମ ପାହାଡ଼ରେ
ନିଆଁ ଜଳିଲେ ଜହ୍ନ ଘଢରେ ନୂଆ ଚମକ ।
ମେଘ ଜମିଗଲେ ଘାସରେ ପୁଲକ ।
ବାଦୁଡ଼ିମାନେ ଉଡ଼ିବାରୁ ଅଜଗରର
ଦେହ ବି ଜହ୍ନରେ ଚକ୍ ଚକ୍ ।
ବାଘ ମାରିବାର ଭୟ ନାହିଁ ରେ ସୁନ୍ଦରୀ !
ଝରକା ଖୋଲି ରଖ । ଲହ ଲହକା ପବନର ବା
କ କସ୍ତମତ ଯେ ପଣତ ଟାଣିବା ଛଡ଼ା ଦେଲେ ଅଧେ ।
ଗଛମାନେ ନିଷ୍କମ୍ପ ଯୋଗୀ । ପତ୍ର ଖସିଲେ
ଜହ୍ନ ଖସି ପଡ଼ିବନି ଯେ । ମନ ହଲେ…
ଏଇ ହାତରେ ତାରା, ଏଇ ହାତରେ ଜହ୍ନ
ଏଇ ହାତରେ ସୂର୍ଯ୍ୟ ଧରିବା ଓ
ଏଇ ହାତରେ ଖେଳାଇ ପାରିବା ପୃଥିବୀକୁ ॥



( ଝଙ୍କାର—୨୮ଶ ବର୍ଷ / ପ୍ରଥମ ସଂଖ୍ୟାରୁ ସଂଗୃହୀତ )

# ସଂପାଦକୀୟ

—ଗଜେନ୍ଦ୍ର କଶୋର ପଂଡ଼ା

ବଡ଼ ହଇରଣ ହେଲ ମଣିଷ ହେ—
ଯେଉଁଠାରେ ପାଦରଖ, ସେଇଠାରେ ବିଚ୍ଛୁର ନାହୁଡ଼,
ବାଟ ମଧ୍ୟ ହୁଡ଼,
ଊର୍ଦ୍ଧ୍ୱକୁ ଚାହିଁଲ ଯଦି ଅଧିକାଂଶ ଚଳର ଛଳଙ୍ଗ
ମସ୍ତିଷ୍କେ ଚେରେଇଛି ଶାଖା ମେଲି ଉଲଟ ମଳଙ୍ଗ ।
ଡାଳେ ଡାଳେ ଚାଲେ କିଏ ପତ୍ରେ ପତ୍ରେ ଚାଲେ
ଏ ଖାସ୍ ମାହାଲେ
ଚାରିଆଡ଼େ ଲକ୍ଷେ ମଡ଼ା ପଚିବାର ଗଂଧ,
ଓ କବନ୍ଧ
ଏକଭୂତ ଖୋଜିବୁଲେ ଆପଣାର ଆତ୍ମପରିଚୟ
ଏ ସ୍ୱର ? ଅନାଥ ଏକ ଶିଶୁ କାନ୍ଦେ ହାୟ !
ଦ୍ୱାରବନ୍ଧେ ଲକ୍ଷ୍ମୀପାଦ କାହାପାଇଁ ? ତୋରଣ କିପାଇଁ ?
ହେ ଗୋସାଇଁ
ମାନପତ୍ର ଲେଢ଼ାନାଇଁ
କାହାକୁ କରିବ ପୂଛା ଏ ସମୁଦ୍ର ଗର୍ଜୁଛି କିପାଇଁ ?
କିଏ ବୁଝାଇବ ମୋତେ ଅର୍ଥ ଏ ସମୁଦ୍ରର କିଭ
କେଉଁ କବିତା ଓ କାଳ କାହାର ବା ନାଆଁ ଚାଟିନବ ?
ଏ ସମୁଦ୍ର 'ମନ୍ତ୍ର'ର ମହଲ
(“ମନ୍ତ୍ରର ସହିତ” ଯାହା, ସେହିତ “ସମନ୍ତ୍ର”)
ଜୟଦ୍ରଥ ବଧ କାଳେ ଅଂଧାର ବ ନୁହଇ ଅପଳ ।

ଆଚ୍ଛା ଅଡ଼ୁଆରେ ପଡ଼େ ମଣିଷ ଦ୍ୱୋ —
ଯେଉଁଠାରେ ହ୍ୱାତରଖ, ଯେଇଠାରେ ଚକ୍ ଚକ୍ ସୁନା
ଓ ଶେଷରେ ବକଲ ବାହୁନା ।
ସଇନ ସାମଂତ ସବୁ ଛନ୍ଦଭଂଗ । ଛିନ୍ନ ଛନ୍ଦ ସମସ୍ତ ଘୁଙ୍ଗଣୀ ।
ଘୁଲ ଘୁଲ । ପଲାଅ ପଲାଅ ।
ଦେଖ ମୋର ଗୃହଆଡ଼ୁ କୋଟି କୁଷ୍ଠଗ୍ରସ୍ତ ଆଂଗୁଠିର
ଠାର ଭାଷା—ରୁହ । ରୁହ । ରୁହ ।
ଚନ୍ଦ୍ରଗୁପ୍ତ ଶୋଇପଡ଼େ, ବ୍ରହ୍ମା ବଳବଳା ବଂଦ ହୁଏ...
ଯାଡ଼େ ଉନ୍ମାତ ଲମ୍ବ ଗାତ ଏକ ଖୋଲା ଜଳ ପାଇଁ
ବର୍ଣ୍ଣ ଅଂଧ ମୁଁ ଲେଖୁଛୁ ଶୂନ୍ୟତାର ଏ ସଂପାଦକୀୟ
ମାଦଲାର ପୃଷ୍ଠା ଭଏ, କବରର ଏପିଟାଫ୍ ଭଏ :
ଆତ୍ମନେପଦୀୟ ।
ସଂକଳ୍ପର ଚକ୍ଷୁନେଇ ମୋତେ ଯଦ କେନ୍ଦ୍ର ପଢ଼ୁଥାଅ,
ବଦାୟ । ବଦାୟ ।।



# ନେଇ ଯାଅ ନଦୀ

—ପ୍ରହରାଜ ସତ୍ୟନାରାୟଣ ନନ୍ଦ

ଯା' ବୋହ୍ମ ନେଇ ଯାଅ ନଦୀ
ଯେଉଁ କବିତାରେ ନାହିଁ ଅନୁରାଗ
ନିଃସ୍ୱାର୍ଥ ଆବେଗ
କୁମ୍ଭୀର ପିଠିରେ ତାକୁ ନେଇ ଯାଅ
ପଦ୍ମଫୁଲ ପରି
ଅତଳ ଜଳକୁ···

ନେଇ ଯାଅ ଶ୍ରେଷ୍ଠ ବଡ଼
କଣ୍ଢେଇ ମେଳକୁ
ଯେଉଁମାନେ ହାତରେ ନାଚନ୍ତି ଚଢ଼ି
କାଠ ଘୋଡ଼ା କଠଉ କଣ୍ଢେଇ
ଶୂନ୍ୟରୁ ଖାଆନ୍ତି ଡାଲି
ଯେଉଁମାନେ ଧରି ତରବାରି
ପରସ୍ପର ବେକ କାଟି
କରି କରି ବନ୍ଦ କୋଠରୀରେ
ବୁଦ୍‌ବୁଦ ଫାଟିବା ପରି ହସୁଥାନ୍ତି
ନିଲଜ ଲଗ୍ନରେ······

ଯା' ବୋଝ ନେଇ· ଯାଆ ନଦୀ
ଅନୁରାଗ ମ୍ଳାନ ଶବ—ହୃଦୟର ଶୂନ୍ୟ ମାଠିଆରୁ
ଭରିବା ଆଗରୁ ହୁଏ ଯାହା ଶବ ଭେଦୀ
ଆହା ନଦୀ—ଆରୋ ନଦୀ...



( ଝଙ୍କାର—୩୨ଶ ବର୍ଷ—୭ମ ସଂଖ୍ୟାରୁ ସଂଗୃହୀତ )

# ଯାତ୍ରା

—ଡକ୍ଟର ଫନୀ ମହାନ୍ତି

ମୋ ବୟସ ବୃନ୍ତ ବୃନ୍ତ ଫିକା ପଡ଼ିଲଣି
କି ଥିଲା ମୋ ରୂପ ଆଜି କ'ଣ ହେଲାଣି ?
ମୋ ଗଣ୍ଠିଲି ସଜାକର
ବାନ୍ଧି ଦିଅ ମୋ ପେଡ଼ି ପୁଟୁଳା
ମୁଁ ଯିବି ପାରିଧିକୁ
ଡଙ୍ଗା ବୋଝି ଅଜଣା ଦ୍ୱୀପକୁ ।
ବାକି ଖାତା ଦେଖି କହ ।
ଛୁଟିକା ପଇସା କେତେ ନେବ ଠିକ୍ କରି
ହିସାବଟି ଦିଅ । ପୁରୁଣା ଫାଇଲ୍ ଘାଣ୍ଟି
କହ ମୋତେ କେତେ ମୋର ବିଲ୍ ସବୁ ପାଇବାକୁ
ଅଛି । ବିଳମ୍ବ ନକର ଆଉ ଯିବାବେଳ
ଉଚ୍ଛୁର ହେଉଛି ।

କେତେବା ବୁଲାଇଥାନ୍ତି ବ୍ୟର୍ଥତାର
ବୋଝ ସବୁ ଶୂନ୍ୟତାର ଛୁଆ କବଳକୁ ?
କେତେ ଆଉ ଗେଲ୍ କରି ଧରିଥାନ୍ତି
ମୋ ଦେହର ରୋଗ ଶୋଷ
ଅଶେଷ ବ୍ୟାଧିକୁ । ମୋ ମନର
ଫିକା ଇଲାକାକୁ । ପାଣିଫଟା ବାଦାମୀ ରଙ୍ଗକୁ ।

ସଜକର ମୋ ରୁନ୍ଝୁଲା
ସଜକର ଘୋଡ଼ା
ହାତୀ, ରଥ ରଥାଙ୍ଗକୁ
ଯିବ ମୁହିଁ ପାରଧିକୁ । ଅଜଣା ଦ୍ୱୀପକୁ



( 'ମାନଚିତ୍ର' ସଂକଳନରୁ ସଂଗୃହୀତ )

# ମୁମୂର୍ଷୁର କେତୋଟି ମୁହୂର୍ତ୍ତ

—ଶ୍ରୀମତୀ ପ୍ରଭଲ୍ଲ ଶତପଥୀ

ଏ ପାଖେ ସେକେଣ୍ଡ ଓ୍ୱାର୍ଡ
ହସ୍‌ପିଟାଲ୍, ମୁମୂର୍ଷୁ ଆର୍ତ୍ତରେ ଭରା
ଆର ପାଖେ ଶାଗୁଆ ରଙ୍ଗର ଟୋପି ପିନ୍ଧି
ଗ୍ରେଟ ଗ୍ରେଟ ଅସଂଖ୍ୟ ପାହାଡ ।
ସାମନା ଝର୍କାର ସେଇ ନୀଳ କାଚେ
ନେସି ହୁଏ
ସୁନାର ଫୁଲର ଖବ—
ଦେହେ ଦେହେ ତାହାର ଉଷ୍ଣତା,
ଲଟା କଣିଅର କୁଂଜେ
ଥିର ଥିର ପବନର ସ୍ୱପ;
ଯେମିତ ଅବୋଧ ଶିଶୁ, କ୍ରୀଡାରତ
ମାଆ କୋଲେ ଲେଟେ ତାର
ଟୁନା ଟୁନା ହସର ବତାସ ।
ଯନ୍ତ୍ରଣା କାତର ଆଖି ଥରେ ଖୋଲି
ଶୁଷ୍କ ଓଷ୍ଠ ପୁନଶ୍ଚ ଭିଜାଇ
କ୍ଷଣେ ମାତ୍ର ଦେଖିନିଏ
ପ୍ରିୟର ଆକୁଳ ଅଶ୍ରୁ, ଆତ୍ମୀୟର
ଅତୁଟ ଆଗ୍ରହ;
ଆଉ ଥରେ ଲୁହିଁଯାଏ ସୁଂଦର ଏ
ପୃଥିବୀର, ଆକାଶର
ପାହାଡ଼ର
ସୁସଜ୍ଜିତ ନଗରର ଛବି
ଏବଂ

ନକଟ ପାର୍କର ସେଇ
ନୃତ୍ୟ ରତା, ହସନ୍ତ କରବୀ ।
କେତୋଟି ମୁହୂର୍ତ୍ତପରେ ଶୂନ୍ୟହେବ
ଜୀବନ ସରଣୀ...
ଅଂଧାରେ ବୁଡ଼ିବ ମୋର
ଭବିଷ୍ୟତ, ବର୍ତ୍ତମାନ; ଅତୀତର
ସମସ୍ତ ସନ୍ଦୋହ
ନଥିବ ଆଖିରେ କିଛି
ଜୀବନ୍ତ ଓ ଫୁଟନ୍ତର ମୋହ ।
ଅଦୂର ପଥର ମୁହିଁ ଏକଦା ପଥିକ
ଯେଉଁଠି ପଦ୍ମର ଗନ୍ଧ
ଏବଂ କିଛି ଅଜଣା ଫୁଲର ।
ଛୁଇଁ କରେ ପୁଲକ ମନର ।
ମୁଗ୍‌ଧ ମୁହିଁ ଝୁରିଲେ ବି
କେତୋଟି ମୁହୂର୍ତ୍ତ ପରେ ଆଉ କ'ଣ
ଦେଖିବ ?—ଦେଖିବ ? ?
ଦଗଯେଗ ଉଦ୍ୟମର କ୍ଷେତ
ମଝିରେ ମଝିରେ ତା'ର
ଯୋଗଫର ହଳଦିଆ ସ୍ରୋତ—
ସମସ୍ତ ଲୁଚିବ ସେଇ ଧୂସର ଛାଇରେ ହାୟ,
ଥରେ ମାତ୍ର ଦେଖିନିଏ
ପ୍ରିୟ ମୋର, ଆପଣାର...
ଯେତେ ସବୁ ବନ୍ଧନ ମୋ
ଦେହ ଆଉ ମନ ଓ ଚେତନାର ।



(ଝଙ୍କାର—୧୭ଶ ବର୍ଷ/୧୦ମ ସଂଖ୍ୟାରୁ ସଗୃହୀତ)

# ନିଆଁ

—ନିତ୍ୟାନନ୍ଦ ପଣ୍ଡା

ଶିରରେ ଶିରାରେ ବାଜେ ଟେଲିଫୋନ ତାରର ବାଜଣା
ବରଫ ନଈରେ ଶୋଇ କିଏ ଖୋଜେ ନିଆଁର ସାନ୍ତ୍ୱନା ।

ଏଇ ନିଆଁ ପୋଡ଼ିଦିଏ ପତ୍ର, ଫୁଲ, ଫଳ ଏବଂ ବଣ,
ଏଇ ନିଆଁ ପୋଡ଼ିଦିଏ ସ୍ୱର୍ଗ ଥିବା କାଚର ନଅର,
ପାଣି ହୁଏ ଲୁହା କେବେ, ପାଣି କରେ ତାଜା ରକ୍ତ ମୋର ।

ନିଆ ଆସେ ଦେହରୁ ଦେହକୁ
ନିଆଁ ଆସେ ମନରୁ ମନକୁ
ନିଆଁ ଆସେ ଚିଠିରୁ ଚିଠିକୁ ।

ଦୀପଶିଖା ଜାଳି ଦେଇ ହୃଦ ତରଳାଏ,
ଉତ୍ତାପରେ ବ୍ୟସ୍ତ କରି
ଗ୍ରୀଷ୍ମ ତଳେ ବୈଶାଖ ଖେଳାଏ ।

ନିଆଁ ତୁଇ ମୋର ଆପଣାର
ଯନ୍ତ୍ରଣା ଓ ନୀରବ କବିତା
ପ୍ରଥମ ପ୍ରତିଜ୍ଞା ମୋର ପବିତ୍ର ସଳିତା ।

ତୋତେ ମୁଁ ଗ୍ରୀଷ୍ମରେ ଧରି ନିଜକୁ ଜଳାଏ
ମୁକୁଳା ବସନ୍ତ ଦେହେ ନିଜକୁ ଉଡ଼ାଇ
ଶେଷରେ ଧାଉଁଣ ଧରି,
କେବେ ଶୁଣି ଏକା ଗୀତ ଗାଏ ।



( 'ନାବିକର ନିଃଶ୍ୱାସ' ସଂକଳନରୁ ସଂଗୃହୀତ )

# ଅବୁଝା ମଣା

—ଶ୍ରୀମତୀ ଶକୁନ୍ତଳା ଦେବୀ

କାହିଁକି ହେଲୁରେ ଠିଆ
ରାସ୍ତାରେ ଅନେକ ଭିଡ଼
ପାଦ ଚଳୁ ନାହିଁ ?

ଯେତେ ଭିଡ଼ ହେଉପଛେ ନିଷ୍ଟପ୍ରତ ଯିବାକୁ ପଡ଼ିବ
ନିଆ ଗିଲା ଏ ବସ୍ତୁ...
ସୁଖଣ୍ଡେ ଗୁଖଣ୍ଡେ ମାପି ହାତେ ନ ଗୁଳଲେ
ଦୁଃଖମୁଖ ବୁଝି ତୋର
ତତେ କ'ଣ ଅବା ସୁଝିବ ?

ପାଦସାଧେ ଅଦଉଠ
ଭଗ୍ନଙ୍ଗୁ କ୍ଳଖାଇ ଉଚ୍ଛୁଳି ଉଠୁଛୁ
ହାତରେ ପାଉନ କାଡ
ଖବୁଙ୍କୁ ସେପାଶରେ କେମିତିକା ଲଙ୍ଗର ଭିତରୁ ?
ଖସିଯାଅ, ବୁଡ଼ିଯାଅ, ଅବା ମଧ୍ୟ ନଇଁଠାରେ
ନିଃଶ୍ୱାସ ନନେଇ ପାର ଉଦ୍ବୃତ୍ତରୁ ଭଉଁସି କାନ୍ଥୁଆ
ଯିବାକୁ ପଡ଼ିବ ତତେ

କାହିଁକି ଡରୁଛୁ ଏତେ ।
ରାସ୍ତା ନାହିଁ, ଘାଟ ନାହିଁ ସବୁଜ ଜଙ୍ଗଲ
ବାହାଶବେ ବାଘ, ଭାଲୁ, ଗଣ୍ଡା କ ଗର୍ଜନ
ତା'ପର ଅବସ୍ଥା ପୁମଣ
ଯତେ ଅଖି ପାଏ ନାହିଁ ।

କି ବିରାଟ ଟାଙ୍ଗର ପାହାଡ଼
ସହଜତ ନୁହେଁ ଏତେ ଯିବାପାଇଁ
ଡେଇଁ ଡେଇଁ ଉପରରୁ ଉପର ।
ଝସିଲେ ପଥର ଖଣ୍ଡେ
ମାଟି ସଙ୍ଗେ ମିଶିଯାଇ ମାଟି ଧାଳଟିବୁ
ଆଉଥିବା କ' ଭରସା—
ଆପଣା ବସାକୁ ଆପେ ଲେଉଟି ଆସିବୁ ।
ଯାହା ବ ହେଉନା ଏବେ—
ଯିବାପାଇଁ ହେବ ତତେ ନିଶ୍ଚିନ୍ତ ଭାବରେ
କାରଣ ତୁ ସତ୍ୟକଲୁ ପ୍ରଥମେ ଭୂଇଁରେ ପଡ଼ି
କୁଆ କୁଆଁ ରଡ଼ଗୁଡ଼ି ଅଟ୍ଟସ୍ଥ ଭାବରେ ।

ତେଣୁ ତୁ ନିଶ୍ଚୟ ଯିବୁ
ଆଉ ଏତେ ବାହାନା କାହିଁକି ?
ବସୁଧ ବୁଝେନା କିଛୁ ପ୍ରତାରଣା ଛଳନା କାହାର
ବସୁଧ ଜାଣେନା ଦୁଃଖ, ହାତ-ପାଦ, ହୃଦୟ ମନର ।

ବସି ରହୁଥା' ତୁନି
ଶୋଇ ଶୋଇ ସ୍ୱପ୍ନ ଦେଖୁଥାଆ
ଘଡ଼ିଏ ଗଛରୁ ଉଠି ମାଳିଜପି ଭଜନ ଗାଆନ୍ତି ।
ଖଟ୍ଟାଳିପି ଦେଇଗଲେ ଅଗଣା ଗୋଟାକ
ଅତନ୍ଦ୍ରାରେ ଶେଯ ଗୁଡ଼ି ଆରାମ କରୁଥା ।...
ନିଜେ ତୁ ନଗଲେ ବୁଲି ସେ' ଆସିବ ହାତଧରି
ଭିଡ଼ି ଭିଡ଼ି ତତେ ନେଇଯିବ,

ବାଜ-ଜାଳି ଯୋଗକରି ସୁଧହାର କରି
ପାହାଡ଼ ଜଙ୍ଗଲ ରାସ୍ତା ଘୁରେଇ ଫୁରେଇ
ପେଇରଠି ଗୁଡ଼ାଇବ ତତେ—

ଆଖପାଖେ କେହି ଆଉ ଥିବେ ନାହିଁ ଶୁଣିବାକୁ
ଆକୁଳ କାନ୍ଦଣା ତୋର
ଶୁଣିବାକୁ ସକଳ ବାହୁନା

ପବନର ହାଡ଼ ସନ୍ଧି ଖଣ୍ଡ ଖଣ୍ଡ ଭାଙ୍ଗି ପଡ଼ୁଥିବ
ନକ୍ଷତ୍ରର ଶୂନ୍ୟତା ଭେଦ
ରାତବୁଲା ଚଗ ଡାହାଣୀର
ମିଞ୍ଜି ମିଞ୍ଜି ପାଟି କଅଁ ଜଳା ପୁଣି
ଧପ୍ ଧପ୍ ଲିଭି ଯାଉଥିବ ।



( 'ମାନସ'—ମାର୍ଚ୍ଚ-ଏପ୍ରିଲ, ୧୯୭୮ରୁ ସଂଗୃହୀତ )

# ସକାଳ

—ପ୍ରସନ୍ନ କୁମାର ପାଟଶାଣୀ

ହେଲା ଚହଟିଲା ପୂର୍ବର ଦିଗନ୍ତ
ଉଲରେ ବାଜିଲା କାହାଳୀ
ଦେଲେ ଶଙ୍ଖଧ୍ୱନି
ଚୁମ୍ବିଲେ ଆଲୋକର ରକ୍ତାକ୍ତ ବର୍ତ୍ତୁଳୀ ।
ାଖୁଡ଼ା ସବୁ ଫୁଟାଇଲେ ସ୍ୱପ୍ନର ବଗିଚ୍ଚ
ଗାଳର ଓଠୁ ପୋଛିଦେଇ କାକରର ମୁକ୍ତା ।
ୟେ ସୂର୍ଯ୍ୟ ହସୁଥିଲା ।
ର ପଦପାତ ସୋହାଗର ସାଉଁଟା ଫୁଲରୁ
କଲା ପଣସ୍ତର ମହୁ
ର ଶିଖାରେ ଫେଣ୍ଟି ମାଖିଗଲା—
ଲା ମତଂଗ ଦେହେ ଉଛ୍ୱାପର ଲହୁ
ଗନ୍ତ ପଜାପତି ଉଡ଼ିଗଲା ଆକାଶକୁ
ଙ୍ଗି ଦୂରେ ପୀଢର ଚଟାଉ ।
ନଉଁ ଏକ ମଲସ୍ତ ମାଳିର ହାତ
ଗଧ ହେଲା ଫୁଲର ଦଂଶନେ,
ଣ୍ଟାସବୁ ଫୁଟିଗଲେ, ଡାଳ ସବୁ ଦୋହଲିଲେ
ଫୁଲମାନେ ହରତାଳ କଲେ
ଚହଲାଇ ବଲାସୀ ନାରୀର ଖୋସା,
ଫୁଲଦାନୀ, ହାଡ଼ର ବୋତାମ
ଯେ ଲୁଟିଛୁ ପୁରଭର ବର୍ତ୍ତିଳ ପରାଗ

ଉଜାଡ଼ିଛୁ ଫୁଲର ମରମ ଫୁଲର ଚରମପଣ
ଆରମ୍ଭିଲ ମଳୟ ବରୁଣେ ସଂଳାପ ।
ମଞ୍ଚମାନେ କମ୍ପୁଥିଲେ
ଟକ୍ ଟକ୍ ଶାଣିତ ଖଡ୍ଗର ଛୁରୀ
କାନ୍ଦୁଥିଲା କାଠର ପିଞ୍ଜରୀ
ଝୋଠାର କବାଟ ଦେଦ୍ରେ ଝିମି ଝିମି ଖରା ମାରୁଥିଲା ।
ଗାଈର ଝାଳୁଆ ପହ୍ଲାରୁ
ସକାଳର ଖରା, କ୍ଷୀର ଦୁହୁଁ ଥିଲା ।
କଅଁଳା ବାଛୁରୀ ଓଠୁ ଶୋଷିନେଇ
ଭୋକର ପିପାସା, ପୀୟୂଷର ସୁବର୍ଣ୍ଣ ସକାଳ
ଖେଳୁଥିଲା ମହାକାଳ ପିତ୍ତଳ ପାତ୍ରରେ
କ୍ଷୀର ମଧୁ ଗଡ଼ୁଥିଲେ ଗହଡ଼ର ତାଳଲ ତାଓ୍ୱାରେ ।
ସକାଳର କୃଷକ ଦେଖିଲା
ସମୁଦ୍ରରେ ଉଠିଛି ତରଂଗ
ଢେଉ ଭାଂଗି ମାଛମାନେ ପାଳୁଥିଲେ
ବନ୍ଧୁର ସଙ୍ଗ । ଜାଲକାଟି ମାଛ ସବେ ଡୁବାଇଛୁ ବଣିକର ମଙ୍ଗ ।
ମଦ୍ଧିମକୁ ବ୍ୟାପିଲାଣି ଆକାଶର ରଙ୍ଗ
ତମ୍ବା ହାତ ଝାଳର ପାଂଚଣ
ବଜାଇଲା ପଖାଳ କଂସାରେ
ମୃତ୍ୟୁର ମୃଦଙ୍ଗ । ଆମ୍ଭାତାର ହାତ ଯୋଡ଼ି
ପୂର୍ବଦରେ କଲା ପ୍ରଣିପାତ
ପୂର୍ବ ହିଁ ଦେଇଛୁ ତାକୁ ଜୀବନେ ସଗ୍ରାମ ।



(ନବରବ — ଦ୍ୱିତୀୟ ବର୍ଷ — ସପ୍ତମ ସଂଖ୍ୟାରୁ ସଂଗୃହୀତ)